# ଅଂଧ ନର୍ଦ୍ଧୀର ସୁଅ

ନାଟ୍ୟକାର

ଡକ୍ଟର ରମେଶ ପ୍ରସାଦ ପ୍ରାଣିଗ୍ରାହୀ

ପ୍ରକାଶକ :



ଗାୟତ୍ରୀ

କଳ୍ପନା ରୋଡ, ଭୁବନେଶ୍ୱର - ୧୪

ଅଂଧ ନଦୀର ସୁଅ
(ନାଟକ)

ରଚନା :
ଡକ୍ଟର ରମେଶ ପ୍ରସାଦ ପାଣିଗ୍ରାହୀ

ସ୍ୱତ୍ୱ :
ଶ୍ରୀମତୀ ବିଷ୍ଣୁପ୍ରିୟା ପାଣିଗ୍ରାହୀ

ପ୍ରକାଶକ :
ଗାୟତ୍ରୀ
କଳ୍ପନା ରୋଡ୍, ଭୁବନେଶ୍ୱର

ଦ୍ୱିତୀୟ ପ୍ରକାଶ: ୨୦୦୪

ପ୍ରଚ୍ଛଦ :
ଅଧ୍ୟାପକ ବଳଦେବ ମହାରଥୀ

ଅକ୍ଷର ବିନ୍ୟାସ :
ଏକ୍ସେଲ ଗ୍ରାଫିକସ୍
କଳ୍ପନା ସିନେମା ରୋଡ୍
ଭୁବନେଶ୍ୱର - ୧୪

ମୂଲ୍ୟ : ପଚାଶ ଟଙ୍କା ମାତ୍ର

ANDHA NADIRA SUA
By
Dr R.P. Panigrahi

Publisher :
Gayatree
Kalpana Road
Bhubaneswar - 14

2nd Edition :
2004

Cover Design :
B. Maharatha

Printed at :
Excel Graphic
Kalpana Cinema Road
Bhubaneswar - 14

Price :
Rs. 50.00 only.

ଏ ନାଟକର ନିର୍ଦ୍ଦେଶକ ଓ ମୋର ବଂଧୁ

ସ୍ୱର୍ଗତ ବାଳକୃଷ୍ଣ ଦାଶଙ୍କ

ସ୍ମୃତିରେ .....

*ରମେଶ ପ୍ରସାଦ ପାଣିଗ୍ରାହୀ*

# ଅଂଧ ନଦୀର ସୁଅ

ପ୍ରଥମ ପରିବେଷଣ : **ଗଂଜାମ କଳା ପରିଷଦ,** ବ୍ରହ୍ମପୁର ।

**ଅଭିନୟରେ :**

ରାମଚନ୍ଦ୍ର
ସରୋଜ
ଦାଶରଥି
ଦେବେନ୍ଦ୍ର
ଦେବାନନ୍ଦ
ଗୋବିନ୍ଦ
ଅଚ୍ୟୁତାନନ୍ଦ
ଶିରୀସ୍
ସୁଂଦରମଣି
ଓ
ସ୍ୱର୍ଗତ ବାଳକୃଷ୍ଣ ଦାଶ (୨ୟ ଶ୍ରେଷ୍ଠ ଅଭିନେତା)

| | |
|---|---|
| ନିର୍ଦ୍ଦେଶନା | ସ୍ୱର୍ଗତ ବାଳକୃଷ୍ଣ ଦାଶ |
| ମଂଚ | ଶ୍ରୀ କେଦାର ଆପ୍ତା |
| | ଓ |
| | ସ୍ୱର୍ଗତ ପ୍ରଦୀପ ପାଢ଼ି |
| ସଂଗୀତ | ଶ୍ରୀ କୃଷ୍ଣଚନ୍ଦ୍ର ସିଂ (ବେବି) |
| | ଓ |
| | ଶ୍ରୀ ଅଶୋକ ପାଢ଼ି |



# ଅଂଧନଦୀର ସୁଅରେ ପ୍ରଥମ ପ୍ଲାବନ

ମଣିଷର ଯେମିତି ପୂର୍ବ ନିର୍ଦ୍ଧାରିତ ଭାଗ୍ୟଲିପି ଥାଏ, ସେମିତି ଥାଏ ନାଟକ ମାନଂକର । ଅନ୍ୟଭାଷାରେ କହିଲେ ଜୀବନ ଯେମିତି ଏକ ପ୍ରାକ୍‌ଲିଖିତ କାହାଣୀ, ନାଟକ ମଧ୍ୟ ସେମିତି ଏକ ପ୍ରାକ୍‌ଲିଖିତ ପରିବେଷଣ । ଏପରିକି ନାଟକେଟି କିପରି, କେତେବେଳେ ପ୍ରକାଶିତ ହେବ ଏବଂ ପ୍ରକାଶନ ପରେ କେବେ କେଉଁଠି କିପରି ପରିବେଷିତ ହେବ, ତାହା ମଧ୍ୟ ପୂର୍ବନିର୍ଦ୍ଧାରିତ ପରି ମନେହୁଏ ।

ଏମିତି କାହିଁକି ମନେହୁଏ ବୋଲି, ଧରନ୍ତୁ ବର୍ତ୍ତମାନ ମୁଁ ଭାବିବା ଆରମ୍ଭ କଲି । ବର୍ତ୍ତମାନ ଜଣାପଡୁଛି : ଲେଖକ ଯେଉଁ ମହାଦଶାର ଯେଉଁ ଅନ୍ତର-ପ୍ରତ୍ୟନ୍ତରରେ ନାଟକଟିଏ ପାଇଁ ପ୍ରଥମ ସ୍ଫୁରଣ ପାଇଥିଲା ଓ ସ୍ଫୁରଣକୁ ଆକାର ଦେବାକୁ ଚେଷ୍ଟା କରିଥିଲା ଏବଂ ଗୋଚରରେ ଯେଉଁ ଲଗ୍ନ/ମୁହୂର୍ତ୍ତରେ ଗଠନ-ଯଜ୍ଞର ପ୍ରଥମ ଆହୁତି ଦେଇଥିଲା, ତାହାହିଁ ନାଟକର ପରବର୍ତ୍ତୀ ଭାଗ୍ୟର ଆରମ୍ଭ ।

ସୃଷ୍ଟିର ପ୍ରଥମ ପିତା ପ୍ରଜାପତି ବ୍ରହ୍ମା ତାଙ୍କ କନ୍ୟା ''ଉଷସ୍'ଙ୍କ ପ୍ରତି ଆସକ୍ତ ହୋଇ ଦିନେ ନିଜକୁ ରୂପାନ୍ତରିତ କରିଥିଲେ ହରିଣ ରୂପରେ । କନ୍ୟା ''ଉଷସ୍'' ନିଜକୁ ହରିଣିଟିଏ କରି ଦୌଡ଼ିବା ଆରମ୍ଭ କଲା । ପ୍ରଜାପତି ତାଙ୍କ ପଛରେ ଦୌଡ଼ି ଦୌଡ଼ି ''ଉଷସ୍'' ଙ୍କୁ ରମଣ କରିବାର ଏକ ଉତ୍‌ଫୁଲ୍ଲିତ ମୁହୂର୍ତ୍ତରେ ପହଂଚିଲେ । ହଠାତ୍ ସେଇ ମୁହୂର୍ତ୍ତରେ ଶର ଆସି ବାଜିଲା ପ୍ରଜାପତି ବ୍ରହ୍ମାଙ୍କ ହରିଣ ଶରୀରରେ । ବୀର୍ଯ୍ୟ ଗୁଡ଼ିକ ତଳେ ପଡ଼ିଗଲା । ତାହା ହେଲା ବୀର୍ଯ୍ୟର ଏକ ଜ୍ୱଳନ୍ତ ହ୍ରଦ । ସେଇଠି ଜନ୍ମ ନେଲେ ଲେଲିହାନ ଅଗ୍ନିହୋତ୍ରୀ ମାନେ । ସେମାନେ ଅଗ୍ନି-ଯୁବକ । ପ୍ରଜାପତି ବ୍ରହ୍ମା ପଛକୁ ଚାହିଁ ଦେଖିଲେ ଶର ନିକ୍ଷେପ କରିଥିବା ବ୍ୟକ୍ତିଟି ହେଉଛଂତି 'ରୁଦ୍ର ବ୍ରହ୍ମନ' । ରୁଦ୍ରବ୍ରହ୍ମନ ନିଜେ କରିଥିବା କାର୍ଯ୍ୟଟି ପାଇଁ ଦୁଃଖ ପ୍ରକାଶ କଲେ । ପ୍ରଜାପତି ବ୍ରହ୍ମା ସଂଗେ ସଂଗେ ତାଂକୁ ଆଶୀର୍ବାଦ ଦେଇ କହିଲେ, ''ହେ ମହାତ୍ମା, ତୁମ୍ଭକୁ ଆଜିଠାରୁ ପଶୁପତି ବୋଲି କୁହାଗଲା ।'' ସେଇଦନିଠାରୁ ଶିବଙ୍କ ନାମ ପଶୁପତି । (ଋକ୍‌ବେଦ : ୧.୧୩.୨)

କଥାଟି ଋକ୍ ବେଦର । ଏହି ବୀର୍ଯ୍ୟ ହୁଏତ ପ୍ରସ୍ତୁତ ହୋଇଥିଲା ଅଗ୍ନିଙ୍କ ଦ୍ୱାରା, ପିତା ପ୍ରଜାପତିଙ୍କ ପାଇଁ । ସବୁ ଆଦି ଦେବତା ଏହି ବୀର୍ଯ୍ୟପ୍ରସ୍ତୁତିରେ

ସଂଶ୍ଳିଷ୍ଟ ଥିଲେ । 'ବ୍ରହ୍ମ' ପ୍ରସ୍ତୁତିରେ ସହଯୋଗ କରିଥିଲେ । ପରେ ସିଏ ହେଲେ ବାସ୍ତୋଷ୍ପତି । ତେଣୁ ଋକ୍‌ବେଦ ଅନୁଯାୟୀ ରଦ୍ର ଅଗ୍ନିଙ୍କ ପରି ନିଜେନିଜର ସଂତାନ (ତନୁନାପାତ) ଅର୍ଥାତ୍ ସୃଷ୍ଟି ନିଜକୁ ନିଜେ ସୃଷ୍ଟି କରେ । କିଂତୁ ସୃଷ୍ଟି ଗୋଟିଏ 'ଘଟଣା' ହୋଇଥିବାରୁ ତାହା ଅନ୍ତରୀକ୍ଷ ଓ କାଳ ଦ୍ୱାରା ଅନୁବଦ୍ଧ । ପ୍ରକାଶ ଥାଉକି, ପ୍ରତ୍ୟେକ ବସ୍ତୁବାଚକ ଶରୀର ଅଭ୍ୟନ୍ତରରେ ଏକ ଅନ୍ତରୀକ୍ଷ ବିଦ୍ୟମାନ । ଏହି ଅଭ୍ୟନ୍ତରର ଅନ୍ତରୀକ୍ଷ ମଧରେ କେତେବେଳେ କେଉଁ ସଂରଚନାର ସ୍ଫୁରଣ ଘଟେ ତାକୁ ଅନୁଧ୍ୟାନ କରିବା ପାଇଁ ମଧ ଏକ ସ୍ୱତଂତ୍ର ଚେତନା ଆବଶ୍ୟକ । "ମୁଁ-୧" ମଧରୁ "ମୁଁ-୨"ଟିଏ ବାହାରି ପୁଣି "ମୁଁ-୧" କୁ ଦେଖିଲେ ମଧ ଅଭ୍ୟନ୍ତର ଦିଶିନପାରେ । ଏ ନାଟକର ମୁଖବନ୍ଧ ଲେଖିବା ସେପରି ଏକ ବ୍ୟାପାର ।

୧୯୭୯-୮୦ ରେ ପୁରୀରେ ଗୋଟିଏ ଛାତ୍ର ଆନ୍ଦୋଳନ ଚାଲିଥିବା ବେଳେ ଲେଖାଯାଇଥିଲା ଏହି ନାଟକ । କୋଉ ଗୋଟିଏ ସ୍ଥାନୀୟ କ୍ଷୁଦ୍ର ପତ୍ରିକା ନାଟକଟିକୁ ଛାପିଥିଲେ ମଧ, ସେତିକିବେଳେ ନାଟକର ନାମ ଥିଲା "ବାଘ ମାତିଛି" । ନାଟକଟି କେବେ ଗୋଟାଏ, ଯାହା ମନେ ପଡୁଛି, ଅଷ୍ଟମ ଦଶକର ପ୍ରଥମ ଭାଗରେ ବି.ଜେ.ବି କଲେଜରେ ଅଭିନୀତ ହୋଇଥିଲା । ତାପରେ ନାଟକର ପରିବର୍ଦ୍ଧିତ ସଂସ୍କରଣ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀର କେନ୍ଦୁଝର ଉତ୍ସବରେ 'ଗଂଜାମ କଳାପରିଷଦ" ଦ୍ୱାରା ପରିବେଷିତ ହୋଇଥିଲା ୧୯୮୨-୮୩ରେ । ପୁନଶ୍ଚ ୧୯୮୮ ମସିହାରେ ଏହି ନାଟକ "ଗଂଜାମ କଳା ପରିଷଦ"ର ବିଷୁବ ସମାରୋହରେ ତା ୧୨-୪-୮୮ ରିଖ ଦିନ ପରିବେଷିତ ହୋଇଥିଲା । ମୁଁ ନିଜେ ମଂଚ ପରିଚାଳନା କରୁଥିଲି ।

ଏଇ ନାଟକଟି ପ୍ରକାଶିତ ହେବା ପ୍ରସ୍ତାବ ଥିଲା । ମୁଁ କିଂତୁ ଯଥା ସମୟରେ ଏହାର ପାଣ୍ଡୁଲିପି ପ୍ରସ୍ତୁତ କରି ପାରିନଥିଲି । ପୁରୁଣା ଅକ୍ଷର ଖଂଜା ପ୍ରେସମାନଂକ ପାଇଁ ସୁଂଦର ଓ ସ୍ପଷ୍ଟ ଅକ୍ଷରର ପାଣ୍ଡୁଲିପି ପ୍ରସ୍ତୁତ ନକଲେ ମୁଦ୍ରିତ ନାଟକରେ ଅନେକ ଭୁଲ ରହିଯିବ । ଏ ଦୃଷ୍ଟିରୁ କବିତା ଲେଖା ସହଜ, ଅଭ୍ୟନ୍ତରର ଆକାଶରେ 'ଫୁଲଝରି' ବାଣ ଫୁଟିଲେ ମଧ ସିଏ ମିଳେଇଯିବା ପୂର୍ବରୁ ତାକୁ ଶବ୍ଦ ଦୀପ ଜାଳି ଜଳେଇ ରଖିହୁଏ ମୁଦ୍ରିତ ପୋଥି ଭିତରେ । କେହି ନ ବୁଝିଲେ ବୁଝେଇବା ପାଇଁ ଅଧ୍ୟାପକମାନେ ଅଛନ୍ତି । ସେମାନେ ଓଜନଦାର ମୁକୁଟ ପିନ୍ଧି ନିଜର ଜ୍ଞାନର କାଟ୍‌ତି ଓ ଖାତିର ଜାହିର୍ କରି ପାରିବେ । ଅତଏବ କବିତା-

ଉପନ୍ୟାସ ଇତ୍ୟାଦି ଭୁଲଭାଲ ଛପା ହେଲେ ମଧ୍ୟ ସେମାନଙ୍କୁ ଇଂରେଜୀ ''ଚଢ଼ି'' ପିନ୍ଧେଇଦେଲେ ଭୁଲଭଟକା ମାନେ ଅଶ୍ଳୀଳ ଦିଶିବେ ନାହିଁ ।

କିଂତୁ ମୋ କଥା ଅଲଗା । ଘର ''ବରମ୍ପୁର'' ଆଉ ଜାତି ''ବାହ୍ମଣ'' । ପେଶାରେ ''ମାଷ୍ଟରଗିରି'' ଆଉ କଳା ବେଉଷାରେ ''ଯାତ୍ରାବାଲା'' । ଆମକୁ ଇଂରାଜୀ ଆସେ ନାହିଁ । ତେଣୁ ଖରାଦିନେ ''ଟାଇ'' ପିନ୍ଧି ଓଜନ ଦେଖାଉଥିବା ସାହିତ୍ୟ ବଟକରାମାନେ ଆମ ପାଖରେ ନାହାନ୍ତି । ନିଜ ପାଇଁ ଓଜନ ତିଆରି କରିବାର ସମସ୍ତ ଉପାୟ ଜଣାଥିଲେ ମଧ୍ୟ ''ସଂଭ୍ରାନ୍ତପଣିଆ''ରେ ଆମ୍ଭର ବିଶ୍ୱାସ ନାହିଁ ।

ସଂଭ୍ରାନ୍ତ ପଣିଆର ଆରମ୍ଭ 'ମୁଖା'ରୁ । ଦ୍ୱୈତ ବ୍ୟକ୍ତିତ୍ୱରୁ । ନିଜ କଥା ଓ କାମ ମଧ୍ୟରେ ବିଭାଜନ ତିଆରି କରି ''ଉତ୍ତମ'' ମାର୍କା ''ବ୍ୟବହାର'', 'ଉତ୍ତମ' ମାର୍କା ''ଭାଷା' ଓ 'ଉତ୍ତମ' ମାର୍କା ''ମୁଖା'' ବ୍ୟବହାର କଲେ ଗୋଟିଏ ସଂଭ୍ରାନ୍ତ ପଣିଆ ତିଆରି ହୁଏ । ତାକୁ ବଜାରରେ ଚାଲୁ କାରାଇ ପାରିଲେ ଗାଡ଼ିଆ ଭିତରର ପଂକ ସାଲୁବାଲୁ ଘୁଷୁରି ମଧ୍ୟ ''ମହାପୁରୁଷ'' ହୋଇଯାଏ । ଆମ ସମାଜରେ, କାହାର କେତେ ମହଲା କୋଠା ଅଛି, କିଏ କି ପ୍ରକାର ପୋଷାକ ପିନ୍ଧିଲା, କୋଉ ଗାଡ଼ି ଚଢ଼ିଲା ଇତ୍ୟାଦି ଉପରେ ସଂଭ୍ରାନ୍ତ ପଣିଆ ନିର୍ଭର କରେ । ଏପରିକି ଜଣେ ଯଦି ରାସ୍ତା କଡ଼ରୁ 'ବରା' ନଖାଇ ଗୋଟେ ଭଲ ହୋଟେଲରେ ଚିକେନ୍ ପକୋଡ଼ା ଖାଇଲା ତା' ହେଲେ ମଧ୍ୟ ସଂଭ୍ରାନ୍ତ ପଣିଆ ଆସୁଚି । ତାର ମାନେ ହେଲା, ସଭା ସମିତିରେ ତାଂକୁ ଫୁଲମାଳ ମିଳିବ, ଅପସଂସ୍କୃତି ପ୍ରଚାର ପାଇଁ ମାଇକ୍ରୋଫୋନ୍ ମିଳିବ, ଖବର କାଗଜରେ ନାଁ ବାହାରିବ ଏବଂ ମଲାପରେ ଷ୍ଟାଚ୍ୟୁ ତିଆରି ହେବ ।

ଏ ଦେଶରେ ୧୦ ହଜାର ଟଂକା ଖର୍ଚ୍ଚ କଲେ ପୁରସ୍କାର ମିଳି ପାରେ । ଲକ୍ଷେ ଟଂକା ଖର୍ଚ୍ଚ କଲେ ଜ୍ଞାନପୀଠ ମିଳିପାରିବ ଏବଂ କୋଟିଏ ଟଙ୍କା ଖର୍ଚ୍ଚ କଲେ ସମ୍ରାଟ ପଦ ମିଳିପାରେ । ମଣିଷ ବସ୍ତୁବାଚକ ବିଶେଷ୍ୟ ହେଲାପରେ ନିଜର ଉତ୍ତର ଓ ଦକ୍ଷିଣ ମେରୁକୁ ବିକ୍ରୀ କରିପାରେ । ସାଧାରଣ ମଧ୍ୟବିତ୍ତ ଗ୍ରାଜୁଏଟ୍‌କୁ ଆମେ ଶିକ୍ଷିତ ବୋଲି ମାନ୍ୟତା ଦେଲୁଣି । ଏମାନେ ଭାବୁଛଂତି ଉପରେ ଯେଉଁ ସଂଭ୍ରାନ୍ତ ପଣିଆର ମାନଚିତ୍ରଟି ଦିଆଗଲା ତାହା ବାସ୍ତବତା ଉପରେ ଆଧାରିତ ସତ୍ୟ । ଉତ୍ତର ପୁଞ୍ଜିବାଦୀ ସଭ୍ୟତାରେ ଏପରି ଏକ ସତ୍ୟ ପ୍ରତିପାଳିତ ହୋଇ ବିରାଟ ବୃକ୍ଷ ଭଳି ଶାଖା ମେଲେଇବା ସ୍ୱାଭାବିକ କଥା । ସବୁକାଳେ ଏପରି ଏକ

ସ୍ରୋତ ପ୍ରବାହିତ ହୋଇ ଆସିଛି । ଏ ମୁଖବଂଧର ଲେଖକ ରମେଶ ପାଣିଗ୍ରାହୀ ଭଳି ଯେଉଁମାନେ ଏପରି ଏକ ବାସ୍ତବତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତି ସେମାନଂକୁ ପ୍ରଥମେ କୁହାଯାଏ: ''ଏମାନଂକ ହାତରେ କିଛି ହୁଏ ନାହିଁ । ତେଣୁ ଏମାନେ ନିଜ ଅଯୋଗ୍ୟତାକୁ ଲୁଚେଇବା ପାଇଁ ଏମିତି ଗୁଡ଼ାଏ ବିଳିବିଳାନ୍ତି ।'' ଆଉ କିଛି ଉପସଂଭ୍ରାନ୍ତ କୁହନ୍ତି - ''ୟାଙ୍କ କଥାରେ ଗୋଟିଏ ବ୍ୟଙ୍ଗାତ୍ମକ ଭାବ ଅଛି । ଆମେ ଇଂରାଜୀରେ ତାକୁ ''ସାଟାୟାର୍'' କହୁ ।'' ଆଉ କିଛି କୁହନ୍ତି, ''ଏ ଲୋକଟାର ''ପଜିଟିଭ୍ ଆଟିଚ୍ୟୁଡ୍'' ନାହିଁ । ସିନିସିଜମ୍''ରେ ମୁଣ୍ଡଟା ଭର୍ତ୍ତି ହୋଇ ପୋକ ଖାଇଗଲାଣି । ଏଇଟା ବିଶ୍ୱନିନ୍ଦୁକ ମହାସଂଘର ସଭାପତି ହେବା ଉଚିତ ।'' ଆଉ ଦଳେ କୁହନ୍ତି, ''ଏଇଟା ପ୍ରାକଟିକାଲ୍ ଲୋକ ନୁହେଁ - ପାଗଳାଟାଏ'' ।

ଏପରି କହୁଥିବା ଲୋକଂକ ସଂଖ୍ୟା ଯଥେଷ୍ଟ ବେଶୀ । ଏଇ ମତାମତ ଓ ବିଶ୍ୱାସକୁ ପୁଞ୍ଜି କରି ବହିଚାଲିଥିବା ନଦୀଟିର ନାମ ''ଅଂଧନଦୀ'' । ଏଇ ଅଂଧନଦୀ ପ୍ରବାହିତ ହେଲାବେଳେ ଆଲୋକ ଓ ସତ୍ୟର ଶିଖାମାନେ ନିର୍ବାପିତ ହେଲାଭଳି ଅନୁଭୂତି ଆସେ । ତେଣୁ ''ସତ କହିବାକୁ କିଆଁ ଡ଼ରିବି'' ଏକ କଳଂକି ଲଗା ମୂଲ୍ୟବୋଧ ପରି ମନେହୁଏ । ଆଦର୍ଶମାନେ କେବଳ ମୁଖାର ସାମଗ୍ରୀ ହୋଇ ଯାଆନ୍ତି । ଭାଷଣର ବିଷୟବସ୍ତୁ ହୋଇ ଯାଆନ୍ତି । ଅନ୍ୟପକ୍ଷରେ ସତ୍ୟକୁ ଓ ଆଦର୍ଶକୁ ହତ୍ୟା କରୁଥିବା କଂସେଇ ମାନଂକ ସଂଖ୍ୟାଗରିଷ୍ଠତା ବେଶୀ ହୋଇଥିବା ଯୋଗୁଁ ''ତିନିତୁଣ୍ଡରେ ଛେଳି କୁକୁର'' ନିୟମରେ ମିଥ୍ୟା ହିଁ ସତ୍ୟର ସ୍ଥାନ ଅଧିକାର କରିନେଉଛି । ବାହାରଟାହିଁ ଭିତର ଉପରେ ପ୍ରାଧାନ୍ୟ ବିସ୍ତାର କରୁଛି । ଏହି ନିୟମରେ ଯାହା ଦୃଶ୍ୟମାନ ତାହାହିଁ ସତ୍ୟ । ଦୃଶ୍ୟମାନ ଜଗତ ଦୃଶ୍ୟରୁ ଉପଦୃଶ୍ୟ ଏବଂ ଉପଦୃଶ୍ୟରୁ ଉପ-ଉପଦୃଶ୍ୟ ବାଟଦେଇ ସିନେମାର ଫ୍ରେମ୍ ପରି ନିଜର ବଂଶ ବିସ୍ତାର କରିଚାଲେ ଏବଂ ତାକୁ କୁହାଯାଏ ବାସ୍ତବତା । ଅତଏବ ବାସ୍ତବତା ବହୁଫଣା ଯୁକ୍ତ ଏକ କାଳ୍ପନିକ ଡ୍ରାଗନ୍ ହୋଇପାରେ । ସେ କଳ୍ପନାର ଆକାଶରେ ଉଡ଼ିପାରେ କିମ୍ବା ଅଂଧନଦୀର ସୁଅରେ ଭାସିପାରେ । ମନେପଡୁଛି ଆମେରିକାରେ ଜଣେ ଏ ଶତାବ୍ଦୀର ବିଶ୍ୱଧର୍ମୀ କବି ଥିଲେ । ତାଂକ ନାଁ Wallace Stevens ·ତାଂକର ଗୋଟେ କବିତାର ନାଁ ହେଲା Thirteen ways of looking at a black bird : ଗୋଟିଏ କଳାପକ୍ଷୀକୁ ଦେଖିବାର ତେରଗୋଟି ବାଟ ଅଛି ବୋଲି କହୁଥିବା ଏହି କବିଙ୍କ କଥାରେ ମୁଁ ଅଭିଧା ଓ

ଲକ୍ଷଣା ଅର୍ଥ ବୁଝିବାକୁ ଚାହେଁ ନାହିଁ । ଏହା ଗୋଟିଏ ବ୍ୟଞ୍ଜନା ହୋଇପାରେ । କଳାପକ୍ଷୀଟିଏ ପରି ଦିଶୁଥିବା ଅଂଧନଦୀକୁ ବୁଝିବା ପାଇଁ ତେରଗୋଟି ବାଟ କଣ ... ? ତେର ଲକ୍ଷ ବାଟ ଥାଇପାରେ । ବାସ୍ତବତା କୋଉଟା ତା' ହେଲେ ?

ବର୍ତ୍ତମାନ କଥା ଉଠିବ ''ଅଂଧନଦୀର ସୁଅ'' ନାଟକର ଭାଷା ସଂପର୍କରେ । ଭାଷା ନାମକ ମୁଖା ଭିତରେ ନିଜ ମୁଣ୍ଡର ପଂକ/କାଦୁଅ ମାନଂକୁ ହୀରା,ମୋତି,ମାଣିକ ଭଳି ବିକ୍ରୀ କରିବାର ସୁଯୋଗ ପାଇଥିବା ପଣ୍ଡିତମାନେ କହିବେ ଏ ନାଟକର ଭାଷା ସ୍ଥାନେ ସ୍ଥାନେ ଅଶ୍ଳୀଳ । ମୁଁ ଜାଣେ ଏକଥା, କାରଣ ''ଗୁଣ୍ଡା'' ନାଟକ ମୁଦ୍ରିତ ହେଲାପରେ ''ରମେଶ ପାଣିଗ୍ରାହୀ-ଗୁଣ୍ଡା''ବୋଲି ବ୍ୟଞ୍ଜନାତ୍ମକ ଭାଷା ପ୍ରୟୋଗ କରାଯାଇଅଛି । ଆଉଦଳେ କହିଛଂତି, ବିଜୟ ତେନ୍ଦୁଲକରଙ୍କର ''ସଖାରାମ ବାଇଣ୍ଡର'' ନାଟକର ପ୍ରଭାବ ପଡ଼ିଛି ମୋ ଉପରେ । ଯୋଉମାନେ ମତେ ଏକଥା କହିଛଂତି ସେମାନଙ୍କର କହିବାର ଇଚ୍ଛାଥିଲା ମୁଁ ତେନ୍ଦୁଲକରଙ୍କୁ ''କପି'' କରିଛି ।

ଓଡ଼ିଶାର ଏ ସୁଡ଼ୋ-ପଣ୍ଡିତ-ସମାଲୋଚକ ବୁଦ୍ଧିଜୀବିଙ୍କୁ ମୁଁ ନିନ୍ଦା କରିବା କଥା । କାରଣ ଗିରିଶ କନ୍ନଡ଼ଙ୍କ 'ହୟବଦନ' କୁ ଯଦି ଭାରତୀୟ ନାଟକରେ ପ୍ରଥମ ଲୋକନାଟ୍ୟ ଶୈଳୀର ପ୍ରୟୋଗ ବୋଲି କୁହାନଯାଏ, ତା'ହେଲେ 'ମହାନାଟକ'ରେ ମୁଁ ସର୍ବଭାରତୀୟ ସ୍ତରରେ ପ୍ରଥମ ଲୋକନାଟ୍ୟ ଶୈଳୀର ପ୍ରୟୋଗ କରିଛି ଓ ୧୯୮୩-୮୪ ବେଳକୁ କରିଛଂତି ତେନ୍ଦୁଲକର । ''ଗୁଣ୍ଡା'' ନାଟକ ଲେଖା ହୋଇଛି ୧୯୬୮ ମସିହାରେ ଓ 'ସଖାରାମ ବାଇଣ୍ଡର' ସପ୍ତମ ଦଶକର ଆରମ୍ଭରେ । ତା'ମାନେ ?

ଏ ଦେଶରେ ନାଟକ ଲେଖିବା ଦ୍ୱାରା ମୁଁ କେବଳ ଶତ୍ରୁତା ପାଇଛି ଲୋକଙ୍କ ପାଖରୁ । ଜୀବନର ସବୁ ସମୟ, ସବୁ ସ୍ୱାଚ୍ଛନ୍ଦ୍ୟ ଓ ସବୁ ଅର୍ଥକୁ ଓଡ଼ିଶାର ସଂସ୍କୃତି ପାଇଁ ଖର୍ଚ୍ଚ କରି ମୁଁ ଶେଷକୁ ଘର 'ଗଂଜାମ' ଆଉ ଜାତି 'ବ୍ରାହ୍ମଣ' ଆଉ ଲେଖାରେ ନାଟ୍ୟକାର ବୋଲି ମଡ଼ରଡ଼୍ ହେବି ? ସାହିତ୍ୟ କରି ମୁଁ ଧ୍ୱଂସ ପାଇଯିବି ଓଡ଼ିଶାର ସାହିତ୍ୟ-ରାଜନୀତିଜ୍ଞ ମାନଂକ ପାଖରେ ? କାହିଁକି ? ତା' ପୂର୍ବରୁ ମୁଁ ସମସ୍ତଙ୍କୁ ଧ୍ୱଂସ ନ କରିବି କାହିଁକି ? ଇଂରେଜୀରେ ଲେଖି ଏମାନଂକର ମୁଖା ନ ଖୋଲିବି କାହିଁକି ?

ମୁଁ ଭବଭୂତି ନୁହେଁ । ବିପୁଳା ପୃଥ୍ୱୀ ଓ ନିରବଧି କାଳ ଭଳି ସଂସ୍କୃତ ଶବ୍ଦ ମାନଙ୍କୁ ମୁଁ ଚିହ୍ନିଥିଲେ ସୁଦ୍ଧା ମୁଁ ସେଇ ଶବ୍ଦମାନଂକୁ ବିଶ୍ୱାସ କରିବା ପାଇଁ ଚୁକ୍ତିବଦ୍ଧ ନୁହେଁ କାହା ପାଖରେ । 'ର୍ୟାସ୍‌ନାଲୀଟି' ଶବ୍ଦଟି ଉପରେ ସମଗ୍ର ବିଶ୍ୱ ବିଶ୍ୱାସ ହରାଇ ଦେଲାଣି ୧୯୬୦ ମସିହାରୁ- ଯେଉଁ ଦିନଠୁ 'ଉତ୍ତର ଆଧୁନିକ' ଯୁଗ ଆରମ୍ଭ ହେଲାଣି ।

ଷଷ୍ଠ ଦଶକ ପରଠାରୁ ଲେଖା ଯାଇଥିବା କୌଣସି ନିଗ୍ରୋ ସାହିତ୍ୟ ପଢ଼ିଛଂତି ଓଡ଼ିଶାର ବୁଦ୍ଧିଜୀବି ମାନେ ? ଉପନ୍ୟାସ ହେଉ-କବିତା ହେଉ-ନାଟକ ହେଉ । ସଂଭ୍ରାନ୍ତ ଭଦ୍ର ଭାଷାକୁ ସମଗ୍ର ବିଶ୍ୱରେ ଘୃଣା କରାଯାଉଛି ବୋଲି ଜାଣିଛଂତି ଶ୍ଳୀଳ-ଅଶ୍ଳୀଳ ଯୁଦ୍ଧର ରେଫରୀ ମାନେ ? George Steiner ଙ୍କୁ ପଢ଼ିଛଂତି ସେମାନେ ? ଭାଷାର ସ୍ୱରୂପକୁ ଜାଣିଛଂତି ସେମାନେ ? Pop-culture ର ସଜ୍ଞା ଜାଣିଛଂତି ଏମାନେ ?

ସଂଭ୍ରାନ୍ତ ଭାଷା ଏକ ମୃତ ମାନସିକତାର କୃତ୍ରିମତା । 'ଇମୋସନ୍' ଅପେକ୍ଷା ରିଜନିଂ (Reasoning) ଙ୍କୁ ଅଧିକ ପ୍ରାଧାନ୍ୟ ଦିଆଯିବା ବ୍ୟବସ୍ଥା ଉଠିଗଲାଣି ୧୯୬୦ ମସିହାରୁ । ପ୍ରାକୃତ ଭାଷାର ପ୍ରଚଳିତ ରୂପକୁ ମାନ୍ୟତା ନ ଦେବା ପାଇଁ ଆମେ କିଏ ?

କୋଉମାନେ ସୃଷ୍ଟି କରିଛଂତି ଏଇ ମୂଲ୍ୟବୋଧର ଫମ୍ପା ମାଠିଆ ? ଯଦି 'ମୂଲ୍ୟବୋଧ' ବୋଲି କିଛି ଅଛି ତା'ହେଲେ ଏ ନାଟକର ନାୟକ ସଦାଶିବର ପରିଣତି ଏମିତି ହେଲା କାହିଁକି ? ଇସ୍କୁଲ ମାନଂକରେ 'ସତ କହିବାକୁ କିଆଁ ଡ଼ରିବି'' ବୋଲି ଗୀତଟିଏ ବୋଲା ଯାଉଛି କାହିଁକି ? ପୁଣି 'ଅପ୍ରିୟ ସତ୍ୟ' କହିବ ନାହିଁ ବୋଲି ଆଉ ଗୋଟିଏ ସଂଶୋଧିତ ନିୟମ ଗଢ଼ାଗଲା କାହିଁକି ? ଶ୍ଳୀଳତା/ ଅଶ୍ଳୀଳତା ମୁଦ୍ରିତ ପୁସ୍ତକରେ ଅଛି ନା ପାଠକର ମୁଣ୍ଡଭିତରେ ଅଛି ?

ଆପଣମାନେ ଜାଣନ୍ତି ଭରତମୁନି 'ନାଟ୍ୟଶାସ୍ତ୍ର' ଲେଖିଲାପରେ କଣ ହେଲା ? ''ପୂର୍ବରଙ୍ଗ''ର ବ୍ୟବସ୍ଥା କରାଗଲା ବେଳେ କେବଳ ଭଜନ ପ୍ରୋଗ୍ରାମ୍ ହେଲା । ସେଇଠୁ ଅସୁରମାନେ ଯାଇ ଏ ସଂପର୍କରେ କଂପ୍ଲେନ୍ ଦେଲେ । ତା'ପରେ ଅସୁର-ଦର୍ଶକମାନଂକ ପାଇଁ ଯାବତୀୟ ତଥାକଥିତ ଅଶ୍ଳୀଳତାକୁ 'ପୂର୍ବରଙ୍ଗ'ରେ ସ୍ଥାନ ଦିଆଗଲା । ଏ ସମାଜରେ ଦେବତା ମାର୍କା ''ଶ୍ଳୀଳତା'' ମାନଂକୁ ବଂଚେଇ ରଖିବା ପାଇଁ ଯେଉଁମାନେ ଠିକା ନେଇଛଂତି ନିଅନ୍ତୁ । କିଂତୁ

ସବୁ 'ବରହଂପୁରୀ'' ଲୋକଙ୍କର ଭାଷା ଖରାପ ବୋଲି କହୁଥିବା ଭଦ୍ରଲୋକଟା କିଏ ? ''ନାଟକ'' ଗୁଡ଼ାକ କବିତା ଏବଂ 'ଉପନ୍ୟାସ'ଠାରୁ ଅନୁନ୍ନତ ବୋଲି କହୁଥିବା 'ବିଜ୍ଞ' ଲୋକଟା କିଏ ? ପରଜା ଓ ସାନ୍ତାଳ ମାନଂକ ସଂପର୍କରେ ଲେଖାଯାଉଥିବା ସାହିତ୍ୟ ଗୁଡ଼ାକୁ ଶ୍ରେଷ୍ଠତମ ବୋଲି ପ୍ରତିପାଦନ କରୁଥିବା ଗୋଷ୍ଠୀଟା କଣ ଦିବ୍ୟଚକ୍ଷୁ ପାଇଥିବା ମହାପୁରୁଷ ? ବନ୍ୟା ପ୍ରପୀଡ଼ିତ କିମ୍ୱା ମରୁଡ଼ି ପ୍ରପୀଡ଼ିତ ଅଂଚଳର ସରଳ ଲୋକଟାକୁ ସମାଜ ଉଚେଇ ଦେଲେ ଯୋଉଭାଷା କହିବ, ସେଇଟା ଅଶ୍ଳୀଳ ବୋଲି କହିବା ଦଳଟା କିଏ ? ଉଦାହରଣ ସ୍ୱରୂପ, ସାରଳା ପୁରସ୍କାର ଭଳି ଅନ୍ୟ କେତେକ ସାହିତ୍ୟିକ ପୁରସ୍କାର ପାଇଁ ନିଅଁପକେଇଥିବା ଦଳେ ସାହିତ୍ୟ କଟୁଆଳ ଉତ୍ତମ ସାହିତ୍ୟର ଯେଉଁ ସଂଜ୍ଞା ନିରୂପଣ କରି ଅଛଂତି, ତାହାହିଁ ସର୍ବଶେଷ ସଂଜ୍ଞା ବୋଲି ବୁଝାଯାଇ ପାରିବ ନାହିଁ । ବଡ଼ବଡ଼ିଆଙ୍କ ଆତ୍ମୀୟ ମାନଂକୁ ଚାକିରୀ ଓ ପ୍ରତିଷ୍ଠା ମିଳିବା ପାଇଁ ଯେପରି ନିୟମମାନ ତିଆରି ହୋଇଥାଏ, ପୁରସ୍କାର/ମାନ୍ୟତା ଦେବାପାଇଁ ସେପରି ଏକ ଗୋଷ୍ଠୀ ନିଜକୁ ସୁହାଇବା ପାଇଁ ବିଭିନ୍ନ ନିୟମ ତିଆରିକରିଛଂତି । ସେଗୁଡ଼ାକ ସାହିତ୍ୟର ମାନ/ମୂଲ୍ୟବୋଧ ସଂପର୍କରେ ଅନ୍ତିମ ବକ୍ତବ୍ୟ ହୋଇ ପାରିବ ନାହିଁ । ହେଲେ ତାକୁ ଭାଙ୍ଗିବା ପାଇଁ ଅନ୍ୟଏକ ପୀଢ଼ି ଆଗକୁ ଆସିବ ।

ସାହିତ୍ୟ ଭାଷା ମାଧ୍ୟମରେ ପ୍ରକାଶିତ ଅନୁଭୂତିର ଏକ ବ୍ୟଞ୍ଜନା ବୋଲି ସେମାନେ ଜାଣି ନାହାନ୍ତି । ନାଟକ ସେହିପରି ଭାବପ୍ରକାଶର ଏକ ବ୍ୟଞ୍ଜନାତ୍ମକ ମାଧ୍ୟମ । ନାଟକରେ ଭାଷା ଏକମାତ୍ର ପ୍ରକାଶ ମାଧ୍ୟମ ନୁହେଁ । ସେଇଠି ଅଭିନୟ, ସଂଗୀତ, ଆଲୋକ ଓ ଚିତ୍ରିତ ସ୍ଥାପତ୍ୟ ମଧ୍ୟ ଭାବ ପରିବାହୀ ମାଧ୍ୟମ । ଯେଉଁ ନାଟକରେ ମାଧ୍ୟମଟି ଭାଷାକୁ ଅତିକ୍ରମ କରିନାହିଁ, ତାହା ଉତ୍ତମ ନାଟକ ନୁହେଁ । ରୂପକଳ୍ପ ବୁଝୁଥିବା ସାହିତ୍ୟ ପଣ୍ଡିତଟିଏ ଦୃଶ୍ୟକଳ୍ପ ବୁଝି ପାରିବ ବୋଲି କୌଣସି ଗ୍ୟାରେଣ୍ଟି ନାହିଁ । ଆଖିରେ ଯେଉଁ ଭାଷାଟି ପଡୁଛି, ସେଥିରୁ ସବୁ କଥା ବୁଝିବାର କ୍ଷମତା ସମସ୍ତଙ୍କର ନଥାଇପାରେ ।

ତା'ପରେ ଆସିବ ନାଟକର ଶୈଳୀ । ଶୈଳୀ କେବଳ ଭାଷା ପ୍ରୟୋଗ ନୁହେଁ । ତାହା ଘଟଣାର ଗଠନ ପ୍ରଣାଳୀ ଓ ଉପସ୍ଥାପନାର ସଂରଚନାତ୍ମକ ଭଂଗୀ । ଏ ଦୁଇଟିକୁ କେହି ବୁଝନ୍ତି ନାହିଁ । ନାଟକ, ଉପନ୍ୟାସ ଓ ଗଳ୍ପ ମାନଂକରେ ''ଚରିତ୍ର ଚିତ୍ରଣ'' ବୋଲି ଗୋଟାଏ ବ୍ୟବସ୍ଥା ଅଛି । ବର୍ତ୍ତମାନ ଦେଖାଯାଉ 'ଚରିତ୍ର'ମାନେ କଣ ?

ଆଗରୁ ସଂସ୍କୃତ ପଣ୍ଡିତ ମାନେ ଓ ପୁରାଣକାରମାନେ ଚରିତ୍ର ଚିତ୍ରଣର ଯେଉଁ ବିଧି ନିରୂପଣ କରିଯାଇଛନ୍ତି ସେଠାରେ ଚରିତ୍ର କେବଳ ଦେବତା, ଅସୁର କିମ୍ୱା କ୍ଷତ୍ରିୟ ସ୍ତରରୁ ଆସିବା କଥା । ସେମାନେ ସଂଭ୍ରାନ୍ତ ହୋଇଥିବେ ଏବଂ ଏକାସଂଗରେ ବୀରରସ ଓ ଶୃଙ୍ଗାରରସ ତିଆରି କରି ପାରୁଥିବେ, ଅର୍ଥାତ୍ ଭଲ ଫାଇଟିଙ୍ଗ କରି ପାରୁଥିବେ ଓ ମନପସନ୍ଦ ଝିଅଟିଏ ଦେଖିଲେ ପ୍ରଥମେ ଶୃଙ୍ଗାର ଧର୍ମୀ କଥା/ଗୀତ ଗାଇ (କଥାକୁ ମଧ୍ୟ ଗୀତ ଭଳି ଗାଇ ହୁଏ) ତାପରେ ଯୌନକ୍ରିୟାରେ ଫାଇଟିଙ୍ଗ୍ ପଦ୍ଧତିଟି କରି ପାରୁଥିଲେ ତାକୁ ନାୟକ କୁହାଯାଉଥିଲା । ଏମାନେ ସଂଭ୍ରାନ୍ତଶ୍ରେଣୀର ହୋଇଥିବାରୁ ଆଜି ପଇସାବାଲାମାନେ ନିଜକୁ 'ହୀରୋ' ବୋଲି ମନେ କରୁଛନ୍ତି । ସମାଜତତ୍ତ୍ୱରେ ଏପରି ନାୟକମାନେ କିପରି ସୃଷ୍ଟି ହେଲେ ଜାଣିବା ପାଇଁ T.B.Bottomore ଙ୍କୁ ପଢ଼ିବାକୁ ପଡ଼ିବ । Elite ଗୋଷ୍ଠୀର ସୃଷ୍ଟି ଓ ବିବର୍ତ୍ତନ ସଂପର୍କରେ ସେ ଏକ ଗ୍ରଂଥ ଲେଖିଛନ୍ତି ।

ତାପରେ ମନେ କରନ୍ତୁ ହଠାତ୍ ଦିନେ ଭାରତବର୍ଷ ସ୍ୱାଧୀନ ହୋଇଗଲା ଓ ଦେବତା/ଅସୁର ମାନେ ବହୁଆଗରୁ ଉଭେଇ ଯାଇଥିଲା ଭଳି ରାଜାମାନେ ମଧ୍ୟ ଉଭେଇଗଲେ । ସେମାନଙ୍କ ସ୍ଥାନରେ ଗଣତାଂତ୍ରିକ ସାମାନ୍ୟ ଲୋକମାନେ ରହିଲେ । ମୁଣ୍ଡରେ କିଂତୁ ପୁରୁଣା ସାମନ୍ତବାଦର ଅଳନ୍ଧୁ ରହିଗଲା ।

ତା'ପରେ ଶିଳ୍ପ ବିପ୍ଳବ ହେଲା ଆଉ ଏକ ପାରାଗ୍ରାଫ୍‌ରେ । ଏଇଠି ଶ୍ରମିକ, ନେତା ରିକ୍ସାବାଲା ଓ ମାଲପିଇ ଖୁବ୍‌ଜୋର୍‌ରେ ମଟରସାଇକଲ ଚଳଉଥିବା ଲୋକଟା ମଧ୍ୟ ହୀରୋ । ମଂତ୍ରୀଙ୍କୁ ଧମକ ଦେଇପାରୁଥିବା ଲୋକଟା ହୀରୋ । ଗୋବବଂଧୁ ଦାଶଙ୍କ ଭଳି ଦାଢ଼ି ରଖିଲେ - କିମ୍ବା ଶତାବ୍ଦୀର ସୂର୍ଯ୍ୟଙ୍କ ପରି ପଗଡ଼ି ବାନ୍ଧିଲେ ତାଙ୍କୁ ଲୋକେ ଥଟ୍ଟାକରି ଯୀଶୁଖ୍ରୀଷ୍ଟ କିମ୍ୱା ହିନ୍ଦୁବାବାଜୀ ବୋଲି କହିବେ । ତାପରେ ଦଳେ ଲୋକ କହିଲେ ତିନିଟା ସିଏଲୋ ଗାଡ଼ି ଥିଲେ ହୀରୋ । ବର୍ତ୍ତମାନ ଅନ୍ତହୀନ ପ୍ରକାର ଭେଦର ହୀରୋ ଅବତାର ଗ୍ରହଣ କଲେଣି ।

ଏପରି ଅବସ୍ଥାରେ ଗାଁରୁ ଆସିଥିବା ସଦେଇ ଏ ନାଟକର ହୀରୋ ହୋଇ ଯିବାରୁ ସବୁ ଅସୁବିଧା ଦେଖାଦେଲା । କାରଣ ତା' ପାଖରେ ଏଗୁଡ଼ା କି[illegible] ନଥିଲା । ଖାଲିଥିଲା ପ୍ରଥମଶ୍ରେଣୀ ପାଇଥିବା ଗୁଡ଼ାଏ ସାର୍ଟିଫିକେଟ । ସେଗୁଡ଼ାକୁ ସେ ଚାଳିଦେଲାପରେ ତା ପାଖରେ ଆଉକିଛି ନଥିଲା ।

କିଂତୁ ତା'ଠାରୁ ଆହୁରି ସାଙ୍ଘାତିକ କଥା ଘଟିଲା ଏହି ନାଟକରେ । ନାଟକ ଆରମ୍ଭରେ ଗୁଡ଼ାଏ ଅଭିନେତା ଆସି ପହଂଚିଲେ । ଗୀତ ଗାଇ ଗାଇ, ସେମାନେ ସଂସ୍କୃତିଆ ନଟନଟୀ ମାନଙ୍କର ନୂତନ ସଂସ୍କରଣ । ସେମାନେ ଚରିତ୍ର ନୁହନ୍ତି । କ୍ରମଶଃ ଭବଭୂତିଙ୍କ ନାଟକ ଗୁଡ଼ିକରେ ଯେପରି ଅଦ୍ଭୁତ ଚରିତ୍ର ସବୁ ଅସିଛଂତି (*ଉତ୍ତରରାମଚରିତ*ରେ ବସୁନ୍ଧରା ଏକ ଚରିତ୍ର) ସେହିପରି *ଅଂଧନଦୀର ସୁଅ* ନାଟକରେ ମଧ୍ୟ ଚରିତ୍ରମାନେ ରୂପାନ୍ତରିତ ।

ଏହି ରୂପାନ୍ତରିକରଣ ପ୍ରକ୍ରିୟାଟି ପ୍ରଥମେ ଆରମ୍ଭ ହୋଇଛି ୧୯୭୧-୭୨ ମସିହାରେ ଲେଖାଯାଇଥିବା ଦୁଇଟି ନାଟକରେ । ବିଜୟ ମିଶ୍ରଙ୍କର ଦୁଇଟି ସୂର୍ଯ୍ୟଦଗ୍ଧ ଫୁଲକୁ ନେଇ ଓ ମୋର ମହାନାଟକ । ବିଜୟ ମିଶ୍ରଙ୍କ ଉକ୍ତ ନାଟକଟି ଏପର୍ଯ୍ୟନ୍ତ କାହିଁକି ମୁଦ୍ରିତ ହୋଇନାହିଁ ମୁଁ ଜାଣେନାହିଁ କିନ୍ତୁ ସେଥିରେ ଲୋକନାଟ୍ୟ ଶୈଳୀର ପ୍ରୟୋଗ କରାଯାଇନଥିଲା । ସମଗ୍ର ଭାରତୀୟ ନାଟ୍ୟ ସାହିତ୍ୟରେ ଏହା ଏକ ନୂତନଯୁଗର ଆରମ୍ଭ । ଅବଶ୍ୟ ଷଷ୍ଠଦଶକର ଆରମ୍ଭରେ, ବାଦଲ ସରକାରଙ୍କ ଏବଂ ଇନ୍ଦ୍ରଜିତ' ନାଟକରେ ଏହାର ସାମାନ୍ୟ ଆଭାସ ମିଳିଥିଲା । କିଂତୁ ସେଥିରେ ମଧ୍ୟ ସଂଗୀତ ଓ ଅନ୍ୟାନ୍ୟ ଲୋକନାଟ୍ୟ ଶୈଳୀର ପ୍ରୟୋଗ କରାଯାଇନଥିଲା ।

ବର୍ତ୍ତମାନ ବିଶ୍ୱ ନାଟ୍ୟ କଥା ବିଚାର କରାଯାଉ । ଏହି 'ରୂପାନ୍ତରିକରଣ' ଚରିତ୍ର କଥାଟିକୁ ଆମେରିକାର Open Theatre ନାମକ ଗୋଟିଏ ସୌଖୀନ ଦଳରେ ପ୍ରଥମେ ପରୀକ୍ଷା କରାଯାଇଥିଲା । ତାକୁ Techinque of Transformation ବୋଲି କୁହାଯାଏ । ଏଥିରେ ଅଭିନେତା ମାନେ ଚରିତ୍ର ହୁଅନ୍ତି ଏବଂ ମଝିରେ ମଝିରେ ଚରିତ୍ର ମଧ୍ୟରୁ ବାହାରିଆସି ଅଭିନେତା ହୋଇ ଯାଆନ୍ତି । ଅଭିନୟ ତତ୍ତ୍ୱରେ ଏପରି ଏକ ପ୍ରକ୍ରିୟାକୁ Improvisation technique ବୋଲି ମଧ୍ୟ କୁହାଯାଇପାରେ ।

ବର୍ତ୍ତମାନ କହିବା ସମାଜତତ୍ତ୍ୱ କଥା । ଦୁଇନଂବର ପଇସାରେ ନିଜକୁ ଯୋଗ୍ୟବୋଲି ପ୍ରମାଣିତ କରୁଥିବା ନାଗରିକ ମାନଙ୍କ କଥା । ଟ୍ୟୁସନରେ ବେଶୀପଇସା ଖର୍ଚ୍ଚ କରିପାରିଲେ ଓ ଖାତା କେଉଁଠି ଦେଖାହେଲା ତାର ବାଗ ଜାଣି ସେଇଠି କିଛି ପଇସା ଖର୍ଚ୍ଚ କରିପାରିଲେ, ପୁଅଝିଅ ଫାଷ୍ଟକ୍ଲାସ ପାଇବେ ଓ ''ଷ୍ଟାର'' ହୋଟେଲରେ ପାର୍ଟି ଦିଆଯାଇ ରାତିକ ପାଇଁ ସଂଭ୍ରାନ୍ତପଣିଆ କିଣା ଯାଇପାରିବ । ସେଇଠି ନାଟ୍ୟସାହିତ୍ୟ ଓ ତତ୍ତ୍ୱକଥା ବୁଝିବାପାଇଁ ସମୟ କାଇଁ ଓ ସୁଯୋଗ କାଇଁ ? ସେମାନଂକୁ ମୂଲ୍ୟବୋଧ କଥା କହିଲେ, ସେମାନେ ହସରେ

ଉଡ଼ାଇଦେଇ କହନ୍ତି - "ଦଶଟା ଇଂରେଜୀ ପ୍ରବଂଧ ଘୋଷିଦେଲେ,I.A.S. ଲଟେରୀ ଉଠିଯାଉଛି । M.A. ଟା ଏମିତି କି ପାଠକି ?"

ଏହି ଅଶ୍ଳୀଳ କଥାଗୁଡ଼ା କହୁଥିବା ଲୋକମାନଙ୍କୁ ଭଦ୍ର ଓ ସଂଭ୍ରାନ୍ତ ତାଲିକାରେ ଗ୍ରହଣ କରାଯାଏ । ଏମାନେ ଅଫିସରେ ଗୋଟିଏ ପ୍ରକାର ଅଭିନୟ କରି ଘରକୁଯାଇ ଆଉଏକ ଚରିତ୍ରରେ ରୂପାନ୍ତରିତ ହୋଇଯାଆନ୍ତି ଏବଂ ପ୍ରତି ଘଟଣା ସହିତ ଏଇ ଚରିତ୍ରମାନଙ୍କର ମୁଖା.ଅଭିନୟ ଶୈଳୀ ଏବଂ ଚାରିତ୍ରିକ ସଜ୍ଜା ବଦଳି ଚାଲେ । ଏହାକୁ "ରୂପାନ୍ତରିକରଣ ଶୈଳୀ" ବୋଲି ଅଭିନୟ ଶାସ୍ତ୍ର ଲେଖିଛି ।

ବୋଧହୁଏ ପାଠକମାନେ କହିବେ ଏଗୁଡ଼ାକ "ସାଟାୟାର" ଏବଂ "ସିନିସିଜମ୍" । ତେଣୁ ପାଗଳାମୀ । ବର୍ତ୍ତମାନ ପାଗଳାମୀ ନାମକ ଏକ ସଂକ୍ରାମକ ରୋଗର ନିରାକରଣ ପାଇଁ ଇଂରେଜୀ "କୋଟେସନ୍" ବଟିକା ଖାଇବା ଆବଶ୍ୟକ । ତେଣୁ ହେ ବିଜ୍ଞଜନେ ! ମୁଁ Gerald Weales ଙ୍କ Jumping off place ନାମକ ନାଟ୍ୟଥିଓରୀ ପୁସ୍ତକରୁ ଗୋଟିଏ ଉଦ୍ଧୃତି ଦେଇ ଉପର ପାରାଗ୍ରାଫ୍ ମାନଙ୍କରେ ଲେଖାଯାଇଥିବା ଶସ୍ତା ସିନିସିଜମ୍ ରୋଗରୁ ନିଜକୁ ମୁକ୍ତକରିବା ପାଇଁ ଚେଷ୍ଟାକରିବି ।

ମହାପୁରୁଷ Gerald Weales ଙ୍କ ଭାଷାରେ ରୂପାନ୍ତରିକରଣ ରେ କ'ଣ ହୁଏ ମୁଦ୍ରିତ ହୋଇଅଛି । ତାହା ହେଲା -" The performer, then with no formal transition, becomes a new character or the same character in a new situation or at another time. This is not simply a way of developing facility in the actor. To the Open Theatre, it is a way of questioning the conventional ideas of reality.A character is defined not by the social or psychological influences on his past, but by his visible acts".(1965 .Collier-Mac Millan Ltd. P. 237)

ବିନା କାରଣରେ ଚରିତ୍ର ଓ ଅଭିନୟ ଶୈଳୀକୁ ବଦଳାଇଲେ ତାକୁ 'କ୍ରୀଡାଧର୍ମୀତା' କୁହାଯାଏ । ଏପରି ଏକ ଚରିତ୍ରକୁ ବୁଝିବା ପାଇଁ ଓଡ଼ିଆ-ସଂସ୍କୃତି ମାର୍କା ସାହିତ୍ୟରେ 'ମାନେବହି' ମିଳୁନାହିଁ । ଯେଉଁ 'ମାନେବହି' ଘୋଷିଲେ ଇଂଜିନିଅର, ଡ଼ାକ୍ତର ବା ପ୍ରଶାସନିକ ସଂଭ୍ରାନ୍ତ ପଣିଆ (?) ମିଳିପାରେ, ସେପରି

'ମାନେବହି' ରେ ମଧ୍ୟ ଏ ସଂପର୍କରେ ବିଶେଷ କିଛି ମିଳେନାହିଁ । ଇଂରାଜୀରେ ଯେଉଁସବୁ ପୁସ୍ତକମାନେ ପ୍ରକାଶ ପାଉଛନ୍ତି, ଓଡ଼ିଶାରେ ଲାଇବ୍ରେରୀ ନଥିବାରୁ ତାହା ବୌଦ୍ଧିକ ଡ଼ାଇନୋସାର୍ ମାନଙ୍କ ପାଖରେ ନାହିଁ । ଯଦି ଥାଆନ୍ତା ଭାଷଣ ଓ ପ୍ରବଂଧ ମାଧ୍ୟମରେ ସେ ସଂପର୍କରେ ସୂଚନା ମିଳି ସାରନ୍ତାଣି ।

ସୁଖର କଥା କବି ଓ ଔପନ୍ୟାସିକମାନେ ଯାହା କରିପାରିନାହାନ୍ତି, ଓଡ଼ିଶାର ସଂଖ୍ୟାଲଘୁ ନାଟ୍ୟକାର ମାନେ ତାହା କରିପାରୁଛନ୍ତି । ରୂପାନ୍ତରିକରଣ ଶୈଳୀରେ ଶ୍ରୀ ମନୋରଂଜନ ଦାସ 'ନନ୍ଦିକା କେଶରୀ' (୧୯୮୪) ଲେଖଛନ୍ତି ଓ ଆଜିର ବହୁ ନାଟ୍ୟକାର ଏହି ଆନ୍ତର୍ଜାତିକ ଶୈଳୀର ପ୍ରୟୋଗ କରୁଛନ୍ତି । ଏପରି ଏକ ସଂରଚନା ଶୈଳୀ ପାଇଁ ଦୃଶ୍ୟ ଭିତ୍ତିକ କଳ୍ପନା (Visual imagination) ଆବଶ୍ୟକ । ଏପରି ଆବଶ୍ୟକତାକୁ ଖୁବ୍‌କମ୍ ସଂଖ୍ୟକ କବି ପୂରଣ କରିପାରନ୍ତି । କିଛି କିଛି ଗାଳ୍ପିକ ଓ ଔପନ୍ୟାସିକ ମଧ୍ୟ ।

'ଅଂଧନଦୀର ସୁଅ' ସେହି ଦୃଶ୍ୟ ଭିତ୍ତିକ କଳ୍ପନାର ଏକ ଆଦିରୂପ । କାରଣ ୧୯୮୧ ରେ ପରିବେଷିତ ଏହି ନାଟକ ଏ ପର୍ଯ୍ୟନ୍ତ ମୁଦ୍ରିତ ହୋଇନଥିଲା । ତେଣୁ ଏହାର ମୁଦ୍ରଣ ପାଇଁ ମୁଁ 'ଗାୟତ୍ରୀ' ପ୍ରକାଶନ ସଂସ୍ଥାଙ୍କ ପାଖରେ କୃତଜ୍ଞ । ଏହାକୁ ଏକ ଐତିହାସିକ ପଦକ୍ଷେପ ବୋଲି କୁହାଯାଇପାରେ ।

୧୦୫, ରସୁଲଗଡ଼,
ଭୁବନେଶ୍ୱର ।

*ରମେଶ ପ୍ରସାଦ ପାଣିଗ୍ରାହୀ*



## ଏଇ ଲେଖନୀର ଅନ୍ୟାନ୍ୟ ନାଟକ

୧. ମୁକ୍ତି ମଣ୍ଡପ (୧୯୬୩)
୨. ତିମିର ତୃଷ୍ଣା (୧୯୬୫)
୩. ବିନ୍ଦୁ ଓ ବଳୟ (୧୯୬୬)
୪. ହେ ପୃଥିବୀ ବିଦାୟ (୧୯୬୭)
୫. ଗୁଣ୍ଡା (୧୯୬୮)
୬. ମୁଁ, ଆମ୍ଭେ ଓ ଆମ୍ଭେମାନେ (୧୯୬୮-୬୯)
୭. ଧୃତରାଷ୍ଟ୍ରର ଆଖି (୧୯୭୦)
୮. ଜଣେ ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ସଂପର୍କରେ (୧୯୭୧)
୯. ମହାନାଟକ (୧୯୭୨)
୧୦. ଅପ୍ରୀତିକର ନାଟକ (*ଏକାଙ୍କିକା ସଂକଳନ*) (୧୯୭୧-୭୩)
୧୧. ଉଡ଼ନ୍ତା ପାହାଡ଼ର ଦର୍ଜା (*ଏକାଙ୍କିକା ସଂକଳନ*) (୧୯୭୧-୭୪)
୧୨. ଆନନ୍ଦ ନଗରକୁ ଯାତ୍ରା (୧୯୭୫)
୧୩. ଆତ୍ମଲିପି (୧୯୭୬)
୧୪. କମଳପୁର ଡ଼ାକଘର (୧୯୬୮,୧୯୭୭)
୧୫. ଶେଷ ପାହାଚ (୧୯୮୦)
୧୬. ଅନ୍ଧ ନଦୀର ସୁଅ (୧୯୮୧)
୧୭. ହାତୀକୁ ହୋମିଓପ୍ୟାଥି (୧୯୮୪)
୧୮. ଯେ ପକ୍ଷୀ ଉଡ଼େ ଯେତେ ଦୂର (୧୯୮୪)
୧୯. ତପସ୍ୟା (୧୯୮୪-୮୫)
୨୦. ବୈକୁଣ୍ଠ ସମାନ ଆହା ଅଟେ ସେହି ଘର (୧୯୮୬)
୨୧. ଶ୍ରୀକୃଷ୍ଣ ଆସୁଛନ୍ତି (୧୯୮୬)
୨୨. ବେଦୀରୁ ସବାରୀ ଅନେକ ଦୂର (୧୯୮୭)
୨୩. ଡ଼ାଆଣୀ (୧୯୮୮)
୨୪. ମଝି ନଈରେ ଘର (୧୯୮୮)
୨୫. କନିଆ ହଜିଛି ତମ ଗାଆଁରେ (୧୯୮୯)
୨୬. ଜଗା ହଜିଗଲା ବଡ଼ ଦାଣ୍ଡରେ (୧୯୯୦)
୨୭. ଗୋଟିଏ ବୃତ୍ତ ଆଙ୍କିବାର ସହଜ ପ୍ରଣାଳୀ (୧୯୯୭)



# ପ୍ରଥମ ଦୃଶ୍ୟ

(ପରଦା ଖୋଲିଲା, ଢ଼ୋଲ, ଟିକିରା, ଢ଼ୋଲ୍‌କି ବା ଧେଣ୍ଡୁରା - କିଛି ନହେଲେ ଥୁମ୍ବା ଜାତୀୟ କୌଣସି ଏକ ବାଜାର ଦ୍ରୁତ ଲୟରେ। ବାଜା କ୍ରମଶଃ କମି କମି ଆସିଲା। ସଂପୂର୍ଣ୍ଣ ନୀରବତା। ତା'ପରେ ଆସ୍ତେ ଆସ୍ତେ ବାଜାର ସ୍ୱର ବଢ଼ିଲା। ସେଇ ଦ୍ରୁତ ଲୟ। ବାଜାର ସ୍ୱର ବଢ଼ିବା ସାଂଗେ ସାଂଗେ ଆଲୋକର ରଂଗ ମଧ ବଢ଼ି ବଢ଼ି ଆସିଲା ଏବଂ ଦେଖାଗଲା

ମଂଚର କେନ୍ଦ୍ରରେ ଠିଆ ହୋଇ ନାଟକର ପ୍ରଥମ ଅଭିନେତା ବାଜା ବଜାଉଛନ୍ତି। ତାଙ୍କର ରୂପସଜ୍ଜା ପୁରୁଣା କାଳିଆ ରାମଲୀଳା ବା କୃଷ୍ଣଲୀଳାର ଗାୟକଙ୍କ ଭଳି। ମୁହଁରେ ଓ ଦେହରେ ବାର୍ଦ୍ଧକ୍ୟର ଛାପ, ହାତରେ କଙ୍କଣ ଓ କାନରେ କୁଣ୍ଡଳ।

ସେ ପାନ ଖାଇ ଦାନ୍ତ ଗୁଡ଼ିକୁ କଳା କରିଦେଇଛନ୍ତି। ଅଭିନୟ କଲାବେଳେ ତାଙ୍କ ଚାଲିଚଳଣ ଓ କଥା କହିବା ଭଂଗୀରେ ଚପଳତା ପରିସ୍ଫୁଟ ହେଉଥିଲା। ପୁନରାୟ ସେ ଟିକିରା/ଢ଼ୋଲ ବଜାଇଲେ। ସାମାନ୍ୟ ହସିଲେ।)

ପ୍ରଥମ ଅଭିନେତା ।। ଆହେ ସଭାଜନେ !
ବିଜ୍ଞଜନେ !
ସୁଧୀଜନେ !
ମୂର୍ଖ ଜନେ !
ସାଧୁଜନ, ପାପୀ ଜନ
ଯେତେ ଅଛ ଜନସାଧାରଣ !
ଶୁଣ ଶୁଣ ଶୁଣ !
ମୂଳା ଖାଉଥିବା ଜନେ
ଘିଅ ପିଆ ଲୋକମାନେ !
ରାସ୍ତାରେ ଧାଡ଼ି ବାଂଧି ଚାଲିଥିବା
ପିମ୍ପୁଡ଼ିମାନେ !

ମହୁଫେଣା ଚାରିପଟେ
ଗୁଣୁ ଗୁଣୁ କରୁଥିବା ମାଛି ମାନେ !
ଆଉ,
ଟୋକୀଙ୍କ ପଛରେ ଗୋଡ଼ାଉଥିବା
ନପୁଂସକ ହିରୋମାନେ
ଶୁଣ ଶୁଣ ଶୁଣ ଶୁଣ
ନାଟକର ଶ୍ରୀଗଣେଶ ଏହିଠାରୁ ଜାଣ !
(ବାଜା ବଜାଇ ସେ ତୁହାଏ ନାଚିଗଲେ)
ଆମ୍ଭମାନେ ଘେନ ନମସ୍କାର
ମା' ଭଉଣୀଏ ଘେନିବ ପ୍ରଣାମ !
ବୟାନ କରୁଛି ଆଜି ନୂତନ ପୁରାଣ ।
(ଏଇକଥ କହିଲା ବେଳକୁ ସେ କ୍ଲାନ୍ତ ହୋଇ ପଡ଼ିଛଂତି ।
ବର୍ତ୍ତମାନ ସେ ଗଳା ପରିଷ୍କାର କଲେ । ଦର୍ଶକମାନଂକୁ
ସହଜ ସ୍ୱରରେ କହିଲେ)
ଓହୋ !
ଭାରୀ ହାଲିଆ ଲାଗୁଛି ।
ଏଇଠି ଯାତରା କରିବୁ ବୋଲି ଆଗଁୟା
ବହୁତ ଦୂରରୁ ଆସିଲୁ !
ଆଉ ପାରୁନି ।
ଏମିତି ଯାତ୍ରା କରି କରି ବାଳ ପାଚିଗଲା ।
ବହୁତ ବୁଲିଲୁ !
ହେଲେ କେହି କିନ୍ତୁ ବୁଝିଲେନି !
କେହିଁ ଚିହ୍ନିଲେନି ।
ଦିଲ୍ଲୀ, କଲିକତା, ବମ୍ବେ ଯିବା ପାଇଁ ପଇସା ନାହିଁ ।
ଓଡ଼ିଶାରେ ଯେଉଁ ପଣ୍ଡିତ ମାନେ ଅଛଂତି
ସେମାନଙ୍କ ମୁଣ୍ଡରେ ଢ଼ାଳିବା ପାଇଁ
ପାଖରେ ତେଲ ନାହିଁ ।
ଦର ହୁ'ହୁ' ବଢୁଛି ।
ବଜାରରେ ଖାଣ୍ଟି ତେଲ ବି ମିଳୁନି ।

(ବର୍ତ୍ତମାନ ବୁଢ଼ା ଜଣକ ଦର୍ଶକମାନଂକ ଭିତରକୁ ପଶିଗଲେ)
ଆଜ୍ଞା, ପାନ ଅଛି ?
ଖଣ୍ଡେ ଦେବେ ସାର୍ ?
ବେଳ ହେଇ ଯାଉଛି ।
ସେଇଥି ପାଇଁ ଟିକିଏ ଆଗୁଆ ଚାଲି ଆସିଲି ।
ଇଏ ନାଟୁଆ ପିଲା ଗୁଡ଼ାକ, କୁଆଡ଼େ ଗଲେ କେଜାଣି !
(ଚାରିପଟକୁ ଚାହିଁ ପ୍ରତ୍ୟେକ ଦିଗରେ ଥରେ ଥରେ ପାଟି କରି ଡ଼ାକିଲେ)
ହଇରେ ହେ ..... !
ନାଟୁଆ ପିଲାମାନେ
ସେଇଠି ବସି ବେଶ ହଉଥିବ ରାତି ଅଧ ଯାଏଁ ?
(ଦର୍ଶକ ମାନଂକ ଆଡ଼କୁ ଚାହିଁ ହସିଲେ)
ଆରେ ଜଲ୍‌ଦି ଆସ !
ଏଇଠି ଲୋକେ ଜମା ହେଇଗଲେଣି ଯେ - :
(ପୁଣି ଦର୍ଶକ ମାନଂକୁ)
ଆମ ନାଟୁଆ ପିଲା ଗୁଡ଼ାକ ଖାଲି ନଦୀ ପହଁରୁଛଂତି ଆଗଁୟା ।
ଆଶା ବୈତରଣୀ !
ହେଲେ ସେଇଟାତ ଗୋଟେ ଅଂଧନଦୀ !
କୁଆଡ଼େ ଭସେଇନେବ ଜଣା ନାହିଁ ।
(ଅଭିନେତା ମାନଂକୁ)
ଆରେ ଜଲ୍‌ଦି ଆସ !
କେତେ ବେଶ ହଉଚ ସେଇଠି ?
ଭାବିଚ ଭଲ ପୋଷାକ ପିନ୍ଧି ପକେଇଲେ ତମକୁ ପୁରସ୍କାର ମିଳିଯିବ ?
ମୋଟେ ନୁହେ, ମୋଟେ ନୁହେ ।
ଭାଇ, ସେ ଆଶା ଛାଡ଼ ।
ପାଟ କୁଣ୍ଡଳ ପାଇବାକୁ ଯଦି ଇଚ୍ଛା ତା'ହେଲେ ଦି'ଦିନ

ଆଗରୁ ଏଇଠି ଅଧିଆ ପଡ଼ିଥାନ୍ତ । ·
ଜଜ୍ ମାନଙ୍କୁ ତେଲ ମାରିଥାନ୍ତ !
ତା'ହେଲେ ଗୋଟାଏ କଣ ହୁଅନ୍ତା !
ଛାଡ଼ ।
ଆରେ ବାବା, ଆସ !
ନାଃ ।
ମତେ ଯେତେ ମାଠିବୁ ମାଠ/ମୁଁ ସେଇ ଦରପୋଡ଼ା......
ଆଉ ଦରପୋଡ଼ା କ'ଣ ?
ଏ ଶଳାଙ୍କୁ ନିଆଁରେ ପକେଇଲେବି ପୋଡ଼ିବେନି ।
ଯାଙ୍କର ଶରୀର ଗୁଡ଼ାକ କଳା ଖାଇଖାଇ ଆମ୍ବା
ହେଇଗଲାଣି ।
ହଉ ।
ବାଜାବାଲା ମାନେ !
ତମେ କାଇଁକି ଚୁପ୍‌ଚାପ୍ ବସିଲ ?
ଗୋଟାଏ କିଛି ଆରମ୍ଭ କର !
(ମଂଚର ସବୁ ଆଲୁଅ ବର୍ତ୍ତମାନ ଜଳି ଉଠିବ ।
ପ୍ରଥମ ଅଭିନେତା ବସିବେ ଓ ଆଉ ଚାରିଜଣ ଅଭିନେତା
ଗୀତ ଗାଇ ଗାଇ ପ୍ରବେଶ କରିବେ । ସେମାନେ ଯେଉଁ
ଗୀତଟି ଗାଇବେ ତାହା ଏହିଭଳି)

ଆମେ ସବୁ ହେଲୁ ନାଟୁଆ ପିଲା
ନାଚି ନାଚି ଆମ ଜୀବନ ଗଲା ।
ରାତି ହେଲେ ରାଜା ଦିନରେ ଚାନ୍ଦା
ବାହାବା ଅନେକ ବେପାର ମାନ୍ଦା ।
ଘରନାହିଁ ଆମେ ଛତରଖିଆ
ଯେଉଁଠି ନାଟକ ସେଇଠି ଠିଆ ।
ମୁହଁ ହସ ହସ ଭିତରେ ଲୁହ
ଜନତା ଆଗରେ ବିକିଛୁ ଦେହ ।
ଅଭିନୟ ଏକ ଅଜବ ଲୀଳା
ଭାତ ମିଳୁନାହିଁ ଖାଉଛୁ କଳା ।

ଘୋଡ଼ା ନାହିଁ ଆମ ମଟର ନାହିଁ
ଭାଷଣ ଦବାକୁ ମଣ୍ଡପ ନାହିଁ ।
ମୁଣ୍ଡନାହିଁ ଆମ ମସଲା ନାହିଁ
କବିହେବା ପାଇଁ କଲମ ନାହିଁ ।
ନାଟବାଲା ଆମେ ଅତି ବେହିଆ
କଥା କହିବାକୁ ହାଟରେ ଠିଆ ।
ବାବୁଭାୟାମାନେ ଆସିଗଲେଣି
ନାଟକ କରିବା ବେଳ ହେଲାଣି
ପରିଚୟ ଟିକେ କରେଇ ଦିଅ
ତା'ପରେ ବହିବ ନଦୀର ସୁଅ ।

ପ୍ରଥମ ଅଭିନେତା ।। ଠିକ୍ ଅଛି, ଆଉ କାଂଦ ନାହିଁ ।
ଆସ ।
ଜନତା ଜନାର୍ଦ୍ଦନ ଆଗରେ ତମର ପରିଚୟ କରେଇ ଦବା ।
(ଦର୍ଶକ ମାନଂକୁ ଲକ୍ଷ୍ୟ କରି)
ସାର୍ !
ଇଏ ଚାରିଜଣ ହେଲେ
ଚେଲା ଯେ ଆମ୍ଭର
ନାଟକ ତିଆରି ହେଲା
ବେଉଷା ତାଂକର ।
ଗ୍ରାମେ ଗ୍ରାମେ ନଗ୍ରେ ନଗ୍ରେ
ବୁଲଂତି ଏମାନେ
ଅଘଟଣ କଥା ଯେତେ
ଦେଖନ୍ତି ଜୀବନେ ।
ମନ ଶିଲଟରେ ଲେଖା
ଅନେକ ପୁରାଣ
କହିଲେ ବି ହେବ ଏକ
ଅନ୍ୟ ରାମାୟଣ ।

ଇସ୍କୁଲରେ ଛାତ୍ର କେବେ
ସଭାରେ ଜନତା
ପଟୁଆର ଗହଳିରେ;
ବର୍ଷା ଯହିଁ ସେଇଆଡ଼େ ଛତା ।।

ଦ୍ୱିତୀୟ ଅଭିନେତା ।। ତା' ହେଲେ ଗୁରୁଦେବ !
ଆଜି ବର୍ଷାଟା କେଉଁ ଆଡୁ ?

ତୃତୀୟ ଅଭିନେତା ।। ଆଜି କୋଉ ଚରିତ ପରିବେଷଣ ହେବ ?

ଚତୁର୍ଥ ଅଭିନେତା ।। ପୌରାଣିକ ହେଲେ ଭଲ ହୁଅନ୍ତା ।

ଦ୍ୱିତୀୟ ଅଭିନେତା ।। ଆଧୁନିକ ହେଲେବି ଆମ ଲୋକେ ତାକୁ ଯାତ୍ରା ବୋଲି ଗ୍ରହଣ କରିନେବେ !

ତୃତୀୟ ଅଭିନେତା ।। ତା'ହେଲେ ଗୁରୁଦେବ ! କୋଉ ନାଟକ ହବ ?

ପ୍ରଥମ ଅଭିନେତା ।। ହେ ହେଃ ! ହେ ହେଃ !
ଏଇ ନାଟକଟା ହେଲା ଯାତ୍ରା ମିଶା ଆଧୁନିକ କିଂବା ଆଧୁନିକ ମିଶା ଯାତ୍ରା ।
ଏ ଘଟଣା ଏପରି ଏକ ଘଟଣା -
ଯାହା ଘଟୁଥିଲା, ଘଟୁଛି ଏବଂ ଘଟିବ ମଧ୍ୟ ।
ଏବଂ ସେଥିପାଇଁ
ଆମେ ତାକୁ ପରିବେଷଣ କରିବା ପାଇଁ ବାଧ୍ୟ ।

ସମସ୍ତେ ।। ଆମ୍ଭେ ଅଭିନେତା,
ଆମ୍ଭେ ମଧ୍ୟ ଜନତା ।

ପ୍ରଥମ ଅଭିନେତା ।। ଅର୍ଥାତ୍ ଆପଣମାନେ ଉପଭୋଗ କଲାଭଳି ଆମ୍ଭେ କେବଳ ଦର୍ଶନୀୟ ବସ୍ତୁ ନୋହୁ । ଆମ୍ଭେ ମଧ୍ୟ ଆପଣ ମାନଂକଭଳି ମଣିଷ ।

ତୃତୀୟ ଅଭିନେତା ।। କିଛି ଦିନ ତଳେ ଆମ୍ଭେ ଶିଶୁଥିଲୁ ।

ଦ୍ୱିତୀୟ ଅଭିନେତା ।। ତା'ପରେ ଯୁବକ ହେଲୁ ।
ତା'ପରେ କିଛି ଧଇଁସଇଁ ଗରମ ନିଶ୍ୱାସ ପରି ଜୀବନ ଓ ତା' ଭିତରୁ ଆଉ ଗୁଡ଼ାଏ ଜୀବନର ଜନ୍ମ ।

ଚତୁର୍ଥ ଅଭିନେତା ।। ତା'ପରେ ବାର୍ଦ୍ଧକ୍ୟ ଓ ମୃତ୍ୟୁ । ପୁନରାୟ ଜୀବନ ।

ସମସ୍ତେ ।। ଆମେ ସବୁଠି ଅଭିନେତା ।

ଚତୁର୍ଥ ଅଭିନେତା ।। ଜୀବନର ଅଧିକାଂଶ ଦ୍ୱଂଦ୍ୱ ଭିତରେ ଆମେହିଁ ବାଦୀ,
ଆମେ ହିଁ ପ୍ରତିବାଦୀ ।

ଦ୍ୱିତୀୟ ଅଭିନେତା ।। ଆମେହିଁ ସତ୍ୟ । ଆମେହିଁ ଅସତ୍ୟ ।

ତୃତୀୟ ଅଭିନେତା ।। ଅମେହିଁ ଜଟିଳ, ପୁଣି ଆମେହିଁ ସରଳ ।

ତୃତୀୟ ଓ ଚତୁର୍ଥ ଅଭିନେତା ।। କ୍ଷମତାର ସ୍ରୁଅ ହୋଇ ଆମେହିଁ ସଭ୍ୟତାର ଅଂଧ ନଦୀ
ଭିତରେ ସମସ୍ତଙ୍କୁ ଭସେଇ ନେଉ ।

ସମସ୍ତେ ।। ପୁଣି ଆମେହିଁ ସମସ୍ତଙ୍କ ରକ୍ତରେ ହୋଲିଖେଳୁ !
(ସମଗ୍ର ମଂଚଟି ବର୍ତ୍ତମାନ ଲାଲ, ସବୁ ଅଭିନେତା
ଯେମିତି ରକ୍ତରେ ହୋଲି ଖେଳୁଛଂତି - ସେମିତି)

ପ୍ରଥମ ଅଭିନେତା ।। ଠିକ୍ କହିଚ !
ତମେ ହେଉଚ ସେଇ ଅଂଧନଦୀର ଧାର
ଯିଏ ବେଳେ ବେଳେ ଲାର୍ଭାସ୍ରୋତ ହୁଏ ।
କେତେବେଳେ ବସନ୍ତର ଦୂତ
କେତେବେଳେ ଝଡ଼ର ସଂକେତ ।
କ୍ଷମତାର ଦାସ ଆମେ
ଅସହାୟ ସୁବର୍ଣ୍ଣ ମାରିଚ ।
ପୋଲିସ ଲାଠିରେ ଯେବେ
ଆମ ମୁଣ୍ଡ ଫାଟିଯାଏ
ସାଧାରଣ ଲୋକଭଳି ତମେ ମଧ୍ୟ ସାନ୍ତ୍ୱନା ଦେଉଚ ।
ତେଣୁ ଆସ,
ମୋର ପ୍ରିୟ ଅଭିନେତାମାନେ !
ଆମେ ବର୍ତ୍ତମାନ ଅଂଧନଦୀର କୂଳରେ ଥିବା ଏକ ଗାଁର
କାହାଣୀ କହିବା ।

ଦ୍ୱିତୀୟ ଅଭିନେତା ।। ଗାଁ ସବୁତ ନଈ କୂଳରେ ।
ସବୁ ସଭ୍ୟତା ନଈ କୂଳରୁ ଆରମ୍ଭ ।

ଚତୁର୍ଥ ଅଭିନେତା ।। ପୃଥିବୀର ସବୁ ସଭ୍ୟତା ନଈ କୂଳିଆ ସଭ୍ୟତା ।
ନଦୀ ତାଂକର ଜୀବନର କାରଣ
ନଦୀହିଁ ତାଂକର ମୃତ୍ୟୁ ।

ତୃତୀୟ ଅଭିନେତା ।। ନଦୀ ଯଦି ଅଂଧ ହୁଏ,
ବାଟ ଭୁଲିଯାଏ ?

ପ୍ରଥମ ଅଭିନେତା ।। ବାଟ ଭୁଲୁ । ତମର କ'ଣ ଗଲା ?
ହୁଁ !
ତମେ ହଉଚ ନାଟକ କଲାବାଲା ।
ହଠାତ୍ କଲେଜ ମାଷ୍ଟର ଭଳିଆ ଦର୍ଶନ ତତ୍ତ୍ୱ କହିବା ପାଇଁ ତମକୁ କିଏ କହିଲା ?

ତୃତୀୟ ଅଭିନେତା ।। କହିବାକୁ କ'ଣ ମନା ?

ପ୍ରଥମ ଅଭିନେତା ।। ଓଡ଼ିଶାରେ ମନା, ନାଟକ ବାଲା କିଛି ତତ୍ତ୍ୱକଥା କହି ପାରିବେନି । କହିଲେ ବି ତାହା ପାଲା, କାରଣ ଆମେ ଯାତ୍ରାବାଲା ।
(ଏହା କହି ପ୍ରଥମ ଅଭିନେତା ବାଜା ବଜେଇଲେ ଏବଂ ପୂର୍ବଭଳି ଗୀତରେ କହିବାକୁ ଆରମ୍ଭ କଲେ :)
ଶୁଣ ଶୁଣ ଭାଇମାନେ ନାଟକ ଚରିତ
ତୁମ୍ଭେ ମିଛ ଭାବିପାର ମତେ କିଂତୁ ସତ ।
ଅଚିହ୍ନା ଗାଆଁରେ ଜଣେ କୃଷକ ଯେ ଥିଲା
ବହୁ ବର୍ଷ ପରେ ତାର ପୁଅଟିଏ ହେଲା ।
କୃଷକ ଗରୀବ ଲୋକ ଜମି ଦୁଇ ମାଣ
ବନ୍ୟାରେ ଫସଲ ନଷ୍ଟ କରିଥିଲା ଋଣ ....
(କ୍ରମଶଃ ମଂଚ ଅଂଧକାର ହେଲା ଓ ଏକ ନଦୀବଂଧ ଭୁଷୁଡ଼ି ପଡ଼ିବାର ଶବ୍ଦ । ତାପରେ ବନ୍ୟାର ଦୃଶ୍ୟ । ଅନେକ ଦୂରରେ ପ୍ରଳୟଙ୍କରୀ ବନ୍ୟାରେ ଗାଁଗଣ୍ଡା ଭାସି ଯାଉଛି । ଭୁଷୁଡ଼ି ପଡୁଚି ଘରଦ୍ୱାର । ଗଛଲତା ସବୁ ଭାସି ଆସୁଛଂତି ବନ୍ୟାରେ । ଲୋକଙ୍କର ଚିତ୍କାର ଶୁଭୁଛି । ତା'ପରେ ଅଂଧାର ଓ ପୂର୍ବଦୃଶ୍ୟ ।)

ପ୍ରଥମ ଅଭିନେତା ।। ସବୁ ସାହୁକାର ଭଳି ସିଏ ମଧ୍ୟ ବାଘ । ରକ୍ତ ସବୁ ଶୋଷି ନେଲା ମାଂସ ମହରଗ । ଘରଦ୍ୱାର ଜମିବାଡ଼ି ସବୁ ସରିଗଲା । ରୋଗରେ ପଡ଼ି ଭାରିଯା ସ୍ୱର୍ଗବାସ ଗଲା ।

ଦ୍ୱିତୀୟ ଅଭିନେତା ।। ଇସ୍ ! କି ଦୁଃଖର କଥା !

ତୃତୀୟ ଅଭିନେତା ।। ଦେଖଭାଇ, ଆଜିକାଲି ଖାଲି ଦୁଃଖ ପ୍ରକାଶ କଲେ କିଛି ହଉନି । ଘଟଣାଟା ପ୍ରଥମେ ବୁଝ । ବ୍ରେଖ୍‌ଟୀୟ ଶୈଳୀରେ ବୁଝ ।

ଚତୁର୍ଥ ଅଭିନେତା ।। ଦୁଃଖ କଲେ ଆଉ କଣହବ ଭାଇ ?
ଏମିତି ଅନେକ ଅଜଣା ଗାଁରେ ଅନେକ ଅଜଣା କୃଷକ ଅଛଂତି ଯେଉଁମାନେ ଅଂଧ ନଦୀର ସୁଅରେ ଭାସିଗଲେ ।
ସେମାନେ ମରିବା କଥା । ମରିବେ ।
ନମଲେ ନାଟକ ଆରମ୍ଭ ହେଇ ପାରିବନି ।

ତୃତୀୟ ଅଭିନେତା ।। ହଇହେ ? ତାର ପରା ଗୋଟେ ପୁଅ ଥିଲା ?

ପ୍ରଥମ ଅଭିନେତା ।। ଥିଲା କ'ଣ ? ବର୍ତ୍ତମାନ କାଳରେ କୁହ !
ପୁଅଟିଏ ଅଛି ।
ତାର ନାଁ ସଦାଶିବ ।
ଏ ବର୍ଷ କଲେଜ ପାଶ
ଚାକିରୀକୁ ଯିବ ।

ଦ୍ୱିତୀୟ ଅଭିନେତା ।। ଯା'ହାଉ - କୃଷକଟା ବଂଚିଗଲା ।

ତୃତୀୟ ଅଭିନେତା ।। ଆଉ ବଂଚିବ !
ଶିଳ ଶିଳୁପା ଗଗନରେ ଉଡୁଛଂତି !
ଯାଙ୍କ କଥା କିଏ ପଚାରେ !
ଇଏ ଏମିତି କୋଉ ଗାଈର ଗୋବର କି ?

ଚତୁର୍ଥ ଅଭିନେତା ।। ଆଜିକାଲି ଚାକିରୀ ପାଇଁ ଇଂରେଜୀ ଇସ୍କୁଲ ପାଠ ଦରକାର ।
ଇଏତ ଗାଁ ଚାଟଶାଳୀରେ ପଢ଼ିଥିବ ।
ଦରମା ପାଉ ନଥିବା ସାର୍‌ଙ୍କ ପାଖରେ ! ଚୁଡ଼ା ସାର୍ !

ପ୍ରଥମ ଅଭିନେତା ।। ଠିକ୍ କଥା ।
ଗାଁ ଚାଟଶାଳୀରେ ପଢ଼ିଥିବ । ଯୋଉଠି ସରକାର ମାଷ୍ଟ୍ରମାନଙ୍କର ଘଣ୍ଟି ବଜାନ୍ତି ।
(ପ୍ରଥମ ସ୍କୁଲ ଘଣ୍ଟି ।
ଆଲୁଅ ବଦଳିଲା । ରେଡ଼ିଓର ବିଦ୍ୟାଳୟ କାର୍ଯ୍ୟକ୍ରମ ବାଜା ବାଜିଲା ।

ଅଭିନେତାମାନେ ବର୍ତ୍ତମାନ ଗାଁ ଚାଟଶାଳୀର ପରିବେଶ ତିଆରି କରିବେ । ଏହି ଅବସ୍ଥାରେ ସେମାନେ ଗାଁ ପିଲାମାନଂକ ଭଳି ଅଭିନୟ କରିବେ । ଯଥା - ଜଣେ ଗୋଟିଏ ଆମ୍ବୁଲ ଚାଟିପାରେ । ଆଉ ଜଣଂକର ନାକରୁ ଶିଘାଣୀ ବହି ଯାଉଛି । ଆଉ ଦୁଇଜଣ କଳିଆ କରୁଥିବେ । ନିର୍ଦ୍ଦେଶକ ଅବସ୍ଥାଟିକୁ ନିଜ ବାଟରେ ଅଭିନେତା ମାନଂକର ମତାମତ ନେଇ improveise କରିବେ ।

କିଛି ସମୟ ପରେ ପ୍ରଥମ ଅଭିନେତା ଜଣକ ବୃଦ୍ଧ ଶିକ୍ଷକ ଭାବରେ ଅଭିନୟ କରି ପ୍ରବେଶ କରିବେ)

ତୃତୀୟ ଅଭିନେତା ।। ସାର୍ ନମସ୍କାର !

ଚତୁର୍ଥ ଅଭିନେତା ।। ସାର୍ ନମଅଅସ୍କାର !

ଦ୍ବିତୀୟ ଅଭିନେତା ।। ସାର୍ ମୁଁ ଆଜି ଶୂନ୍ ହେଇଚି ।

ତୃତୀୟ ଅଭିନେତା ।। (ସେମିତି ପିଲାଙ୍କ ଭଳି)
ସାର୍, ବା' କହୁଚି ଇସ୍କୁଲ ଗଲେ କ'ଣ ହବ ?
ଗାଈ ଚରେଇବୁ ଯା' -

ଚତୁର୍ଥ ଅଭିନେତା ।। ସାର୍ ଆଉ ଟିକିଏ ଗଲେ ମୁଁ ଟିକିଏ ଘରକୁ ଯିବି । ବୋଉ ଆଜି ପିଠା କରିଛି ।

ପ୍ରଥମ ଅଭିନେତା ।। (ବୁଢ଼ା ମାଷ୍ଟର ଭଳି)
ବହିଖାତା ଶିଲଟ ସବୁ ଗଲା କୁଆଡ଼େ ?
ଏ ପିଲେ ! ବହି ଖାତା ସବୁ କାଇଁ ?

ଚତୁର୍ଥ ଅଭିନେତା ।। ସାର୍ ! ସରକାରୀ ବହି ମିଳୁନି । ଶିଲଟ ଭାଂଗିଗଲା ।

ତୃତୀୟ ଅଭିନେତା ।। ସାର୍ ଆଜି ଇସ୍କୁଲ ଛୁଟି କରିଦେଲେ ଚଳନ୍ତାନି ?

ଦ୍ବିତୀୟ ଅଭିନେତା ।। ନାଇଁ ସାର୍ - ଆଜି ଆପଣ ପଢ଼ାନ୍ତୁ ।

ପ୍ରଥମ ଅଭିନେତା ।। (ରାଗି ଯାଇ ଗୋଟିଏ ପଦ୍ମଫୁଲ ଦେଖେଇଲା ଭଳି ମୁଦ୍ରା କଲେ)
କଣଟିଏ ପଢ଼େଇବି ?
ବହିତ ନାଇଁ !
ଖାତା ତ ଆଣିଲ ନାଇଁ !
ହୁଁଃ !

(କିଛି ସମୟ ପାନ ଚୋବେଇଲେ ଓ ତା'ପରେ ସ୍ୱର ବଦଳାଇ)
ଅବଶ୍ୟ ମୋର ମଧ ଟିକିଏ ଗୋପାଳପୁର ଅମିନ ବାବୁଙ୍କ ପାଖରେ କାମଥିଲା ।
ହଉ, ପ୍ରଥମେ ସମସ୍ତେ ଠିଆ ହେଇ ପ୍ରାର୍ଥନାଟା କରିଦିଅ ।
ଟିକିଏ ଗହଳି ନହେଲେ ଇସ୍କୁଲ ଭଳିଆ ଲାଗିବନି ।
ଗାଅ, ପ୍ରାର୍ଥନା ଗାଅ -
(ବର୍ତ୍ତମାନ ସବୁ ଅଭିନେତା ପ୍ରାର୍ଥନା ଗାଇବେ)

ଆହେ ଦୟାମୟ ବିଶ୍ୱ ବିହାରୀ
ଘେନ ଦୟାବହି ମୋର ଗୁହାରୀ
ତୁମେ ଶୁଭ ବୁଦ୍ଧି ପରା ଶିଖାଅ
ତୁମେ ଭଲବାଟ ପରା ଦେଖାଅ
ମୋର କାମକୁ କରାଅ ସରସ
ମୋର ମୁଖେ ଦିଅ ଚିର ହରଷ
ସତ କହିବାକୁ କିଆଁ ଡ଼ରିବି
ସତ କହି ମଲେ ପଛେ ମରିବି !
ମତେ ଏତିକି ଶିଖାଅ ସାଇଁହେ
ମୋର ଧନଜନ ଲୋଡ଼ା ନାଇଁହେ ।

(ପ୍ରାର୍ଥନା ପରେ କିଏ କୋଉ ଯାଗାରେ ବସିବେ ସେଥିପାଇଁ ପିଲାମାନଂକ ଭିତରେ କଜିଆ ହେଇଚି ।)

ପ୍ରଥମ ଅଭିନେତା ।। ଚୋପ୍ ! ଛତରା ସବୁ କୋଉଠି କାର ।
ସ୍କୁଲର ନାଁ ପକେଇବ ! ବାପ ଦାଦାଙ୍କର ନାଁ ପକେଇବ !
ଦେଶର ନାଁ ପକେଇବ ! ଗାନ୍ଧୀ ବୁଢ଼ାର ନାଁ ପକେଇବ !
ତୁ' କାନ ଧରି ବସ ।
(ଆଉ ଜଣେ ଅଭିନେତାଙ୍କୁ) ତୁ' ପାଟି ବୁଜି ବସ !
(ଆଉ ଜଣଙ୍କୁ) ତୁ' ଆଖି ବୁଜି ବସ !
(ସାର୍‌ଙ୍କ କଥା ମାନି ଅଭିନେତାମାନେ ଗାନ୍ଧୀଙ୍କ ମାଙ୍କଡ଼ ଭଳି ଅଭିନୟ କଲେ । କିଛି ସମୟ ପରେ)
ପ୍ରାର୍ଥନ ସରିଲା, ବର୍ତ୍ତମାନ ଘରକୁ ଯାଅ ପିଲାମାନେ ।

ଘରେ ପିତାମାତାଙ୍କୁ ସାହାଯ୍ୟ କରିବା ଉଚିତ । ବୁଝି ପାରିଲ ?

ସମସ୍ତେ ।। ହଁ ସାର୍ !

ପ୍ରଥମ ଅଭିନେତା ।। ନୀତିବାକ୍ୟ ଗୁଡ଼ାକ ଘୋଷିଚ ?

ଦ୍ୱିତୀୟ,ତୃତୀୟ ଚତୁର୍ଥ ଅଭିନେତା ।। କୋଉ ନୀତିବାକ୍ୟ ସାର୍ ?

ପ୍ରଥମ ଅଭିନେତା ।। ମୂର୍ଖ ! ତମେ ସବୁ ମୂର୍ଖ !
(ବର୍ତ୍ତମାନ ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଅଭିନେତା ଦୋଖ କରିଥିବା ଛାତ୍ରଙ୍କ ପରି ଅଭିନୟ କରିବେ)
କୁହ ! ''ଭଲପିଲା ହେବି'' ।

ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଅଭିନେତା ।। ଭଲପିଲା ହେବି ।

ପ୍ରଥମ ଅଭିନେତା ।। 'ସବୁବେଳେ ସତ କହିବି' ।

ଦ୍ୱିତୀୟ ଅଭିନେତା ।। ସବୁବେଳେ ସତ କହିବି ।

ତୃତୀୟ ଅଭିନେତା ।। ସବୁବେଳେ ସତ କହିବି ।

ଚତୁର୍ଥ ଅଭିନେତା ।। ସବୁବେଳେ ସତ କହିବି ।

ପ୍ରଥମ ଅଭିନେତା ।। ଗଣ୍ଡଗୋଳ ଯାଗାକୁ ଯିବି ନାଇଁ କାରଣ ଅରଣା ମଇଁଷି ରହିଛି ଅନାଇ ! ତେଣୁ ଗଣ୍ଡଗୋଳ ଯାଗାକୁ ଯିବି ନାହିଁ ।

ଚତୁର୍ଥ ଅଭିନେତା ।। ଗଣ୍ଡଗୋଳ ଯାଗାକୁ ଯିବି ନାଇଁ ।

ତୃତୀୟ ଅଭିନେତା ।। ଗଣ୍ଡଗୋଳ ଯାଗାକୁ ଯିବି ନାଇଁ ।

ଦ୍ୱିତୀୟ ଅଭିନେତା ।। ଗଣ୍ଡଗୋଳ ଯାଗାକୁ ଯିବି ନାଇଁ ।
(ଉପରୋକ୍ତ ସଂଳାପ ଗୁଡ଼ିକୁ ଉଚ୍ଚାରଣ କରୁ କରୁ ଭିତରକୁ ଚାଲିଗଲେ ଓ ମଂଚ ମଧ ଅଂଧକାର ହେଲା ।)

ପ୍ରଥମ ଅଭିନେତା ।। ଯାହାର ନାମ ଇସ୍କୁଲ
ସିଏ ଅତି ଭଲ
ସେଇଠି ତିଆରି ହେବା
ସବୁ ପିଲା ଭଲ ।
ଇସ୍କୁଲରୁ ପଢ଼ା ସାରି
ପହଁଚେ କଲେଜ

କଲେଜ ଅତ୍ୟନ୍ତ ଭଲ ।
ମନ ସଜ ସଜ ।
ତା'ପରେ ସେଇଠୁ ଆସି
ଦୁନିଆ ପ୍ରବେଶ ।
କାହାକୁ ଅମୃତ ମିଳେ
କିଏ ପାଏ ବିଷ ।
ଦୁନିଆଟା ସାରା ଖାଲି
ଅଫିସ ଅଫିସ ।

ସମବେତ ସ୍ୱର ।। ଅଫସ୍ ଅଫିସ ।

ପ୍ରଥମ ଅଭିନେତା ।। ଚାକିରୀ ସମସ୍ୟା କିଂତୁ
ହୁଏ ନାହିଁ ଶେଷ ।।

(ବର୍ତ୍ତମାନ ଅଭିନେତାମାନେ ନିଜ ନିଜ ଭିତରେ ଗୋଟିଏ ଅଫିସ୍‌ ବାତାବରଣ ତିଆରି କରିବେ ।
ଏଠାରେ ଆବହ ସଂଗୀତର ସାହାଯ୍ୟ ନିଆଯିବ ।
କୋଳାହାଳ । ଟାଇପ୍ ମେସିନର ଶବ୍ଦ । କଲିଂବେଲ୍ ଇତ୍ୟାଦି ।
ଅଭିନେତାମାନେ କିରାଣୀ, ପିଅନ, ବଡ଼ବାବୁ, ଅଫିସର ପ୍ରଭୃତି ଭୂମିକାରେ ଅଭିନୟ କରିବେ ।
ପ୍ରଥମ ଅଭିନେତା ହେବେ ଜଣେ ପିଅନ । ନିର୍ଦ୍ଦେଶକ ଏଇ ଅବସ୍ଥା ଗୁଡ଼ିକୁ ତିଆରି କରିବା ପାଇଁ ପାଲା ବା ଦାସକାଠିଆ ପ୍ରଭୃତି ଲୋକନାଟ୍ୟ ଶୈଳୀର ବାଜାର ସାହାଯ୍ୟ ନେବେ । ପୁରାଣ ବର୍ଣ୍ଣନା କଲାବେଳେ ଉପରୋକ୍ତ ନାଟ୍ୟଶୈଳୀର ଅଭିନେତାମାନେ ଯେପରି ନିଜ ଚରିତ୍ରରେ ରୂପାନ୍ତରିତ ହୋଇ ଯାଆନ୍ତି ସେହିଭଳି ।)

ଦ୍ୱିତୀୟ ଅଭିନେତା ।। ନାରଣ !

ପ୍ରଥମ ଅଭିନେତା ।। ଆଜ୍ଞା !

ତୃତୀୟ ଅଭିନେତା ।। ସାହେବ କୁଆଡ଼େ ଗଲେ ?

ପ୍ରଥମ ଅଭିନେତା ।। ସେକ୍ରେଟେରୀଙ୍କ ପାଖକୁ ଯାଇଥିବେ ସାର୍ ।

ଦ୍ୱିତୀୟ ଅଭିନେତା ।। ସେକ୍ରେଟେରୀଙ୍କ ପାଖକୁ ଗଲେ ନା ଲଞ୍ଚ ଖାଇବାକୁ ?
ଦେଖିଲ ଡ୍ରାଇଭର ଅଛି ନା ନାଇଁ !

ପ୍ରଥମ ଅଭିନେତା ।। ଡ୍ରାଇଭର ନାହିଁ ସାର୍ ।
ଦ୍ୱିତୀୟ ଅଭିନେତା ।। ତା'ହେଲେ ଲଞ୍ଚ ଖାଇ ଯାଇଥିବେ । ଆସୁ ଆସୁ ଦେଢ଼ଟା ?
ପ୍ରଥମ ଅଭିନେତା ।। ଚାରିଟା ବାଜିବ । ଯାହା ହେଲେ ବି ଚାରିଟା ଆଗରୁ ନୁହେ ।
ତୃତୀୟ ଅଭିନେତା ।। ତା'ହେଲେ ଗୋଟେ ଚା'ନେଇ ଆସ ।
ଚତୁର୍ଥ ଅଭିନେତା ।। ମୋ ପାଇଁ ଗୋଟେ ହାତଗୁଣ୍ଡି ପାନ ।
ଦ୍ୱିତୀୟ ଅଭିନେତା ।। ନାରଣ !
ପ୍ରଥମ ଅଭିନେତା ।। ହଜୁର !
ଦ୍ୱିତୀୟ ଅଭିନେତା ।। ଖଣ୍ଡେ ଖଇରିଆ ଧୂଳିଗୁଣ୍ଡି ଜର୍ଦ୍ଦା !
ପ୍ରଥମ ଅଭିନେତା ।। ସାର୍ ଆଣୁଚି (ଗଲା)
ତୃତୀୟ ଅଭିନେତା ।। ଏ ଫାଇଲଟା ବଡ଼ବାବୁଙ୍କ ଟେବୁଲ ଉପରେ ରଖିଦିଅ -
ଚତୁର୍ଥ ଅଭିନେତା ।। ମୁଁ ଚାଲିଲି ଭାଇ ! ଆଜିପାଇଁ ରାଜକାର୍ଯ୍ୟ ଯଥେଷ୍ଟ ହେଇଗଲା ।
ତୃତୀୟ ଅଭିନେତା ।। କ'ଣ ଭାଇ ? ଏଗାରଟା ବେଳେ ଆସି ତିନିଟା ବେଳେ ଛୁ' ?
ଚତୁର୍ଥ ଅଭିନେତା ।। ଆଜି ସଟଲ୍‌ରେ ଚେକିଂ ଥିଲା । ଗାଡ଼ି ଅଧଘଣ୍ଟାଏ ଲେଟ୍ !
ଦ୍ୱିତୀୟ ଅଭିନେତା ।। କାହିଁକି ? ସିଜିନ୍ ଟିକେଟ୍ କରିନା କି ?
ଚତୁର୍ଥ ଅଭିନେତା ।। ଦଶଟଙ୍କା ଫାଇନ୍ ଦେବି ପଛେ ଶଳା ସିଜିନ୍ ଟିକେଟ କରିବି ନାହିଁ ।
ତୃତୀୟ ଅଭିନେତା ।। ଭଲ, ଭଲ (ଟିକିଏ ପରେ) ତା'ହେଲେ ମୁଁ କାହିଁକି ଏଇଠି ରହିବି ?
ଦ୍ୱିତୀୟ ଅଭିନେତା ।। ଭାଇ ସେକ୍‌ସନ୍‌ରେ ଜଣେ ହେଲେ କିଏ ନ ରହିଲେ କେମିତି ହବ ? ମୁଁ ତ ଯେମିତି ହେଲେ ଯିବି - ମୋ ସ୍ତ୍ରୀ ଦେହ ଖରାପ, ଖରାପ ମାନେ ସିରିଅସ୍ !
ତୃତୀୟ ଅଭିନେତା ।। କ'ଣ ହେଇଚି ?
ଦ୍ୱିତୀୟ ଅଭିନେତା ।। ରାଧେ ରାଧେ - ତମର ଅଧେକୁ ଆମର ଅଧେ -
ତୃତୀୟ ଅଭିନେତା ।। ରାଧେ ରାଧେ !
ଦ୍ୱିତୀୟ ଅଭିନେତା ।। ତମର ଅଧେକୁ ଆମର ଅଧେ

ଚତୁର୍ଥ ଅଭିନେତା ।। ରାଧେ ରାଧେ -
ତୃତୀୟ ଅଭିନେତା ।। ତମର ଅଧେକୁ ଆମର ଅଧେ -
ଦ୍ୱିତୀୟ ଅଭିନେତା ।। ରାଧେ ରାଧେ -
ସମସ୍ତେ ।। ତମର ଅଧେକୁ ଆମର ଅଧେ

(ଗୋଟିଏ କୀର୍ତ୍ତନ ବା କବାଲୀ ଭଳି ଏଇ ପଦଟି ବାରମ୍ବାର ଉଚ୍ଚାରିତ ହେବା ଭିତରେ ଧିରେ ଧିରେ ଆଲୋକ ଅସ୍ତମିତ ହେବ ।

ନୀରବତା ।

ତା'ପରେ ଢ଼ଂ-ଢ଼ଂ ହୋଇ କୌଣସି ଏକ ଘଣ୍ଟାରେ ଏଗାରଟା ବାଜିବା ଶବ୍ଦ । ବର୍ତ୍ତମାନ କ୍ରମେ କ୍ରମେ ଆଲୁଅ ଆସିବ । ଯେଉଁ ଅଭିନେତାମାନେ ବର୍ତ୍ତମାନ କିରାଣୀ ଭୂମିକାରେ ଅଭିନୟ କରୁଥିଲେ ସେମାନେ ଏଇ ଦୃଶ୍ୟରେ ଅଫିସର ଭୂମିକାରେ ଅଭିନୟ କରିବେ । ପ୍ରଥମ ଅଭିନେତା ବର୍ତ୍ତମାନ ମଧ୍ୟ ସେଇ ପିଅନ ଭୂମିକାରେ ଅଭିନୟ କରିବେ)

ଚତୁର୍ଥ ଅଭିନେତା ।। ହାଲୋ ! ମି.ମୁର୍ମୁ ! ହାଉ ଡୁ ୟୁ ଡୁ ?
ତୃତୀୟ ଅଭିନେତା ।। ଫାଇନ୍ ! ଥ୍ୟାଙ୍କ ୟୁ !
ଦ୍ୱିତୀୟ ଅଭିନେତା ।। ପେଟ୍ରୋଲ ଦର ଯାହା ହେଲାଣି - ଏଣିକି ଟ୍ୟାକ୍ସି କରି ଆସିବାକୁ ପଡ଼ିବ ।
ତୃତୀୟ ଅଭିନେତା ।। କାଇଁକି ? ସାଢ଼େ ନା'ଟା ବେଳେ ସରକାରୀ ଗାଡ଼ି ପହଂଚିବା କଥାତ !
ଦ୍ୱିତୀୟ ଅଭିନେତା ।। ମେଟାଡ଼ୋର ଭ୍ୟାନ୍‌ରେ ଆସିବା ଅପେକ୍ଷା ଟ୍ୟାକ୍ସି କରି ଆସିବା ଅଧିକ ସମ୍ମାନ ଜନକ ।
ଚତୁର୍ଥ ଅଭିନେତା ।। ଆଉ ଏ ଚାକିରୀରେ ନା ସମ୍ମାନ ଅଛି ନା ଚାର୍ମ ଅଛି ।
ଦ୍ୱିତୀୟ ଅଭିନେତା ।। କଥା କଥାକେ ଭିଜିଲାନ୍ସ ଆସି ଘର ତନଖ୍ କରୁଛି । ମଂତ୍ରୀମାନେ ମାଡ଼ ମାରୁଛଂତି ।
ତୃତୀୟ ଅଭିନେତା ।। ସପ୍ତାହରେ ଦିନେ ଗାଡ଼ି ଘୋଡ଼ା ବଂଦ । ଘର ଖାଲି କର ବୋଲି ନୋଟିସ୍ ।
ଚତୁର୍ଥ ଅଭିନେତା ।। ଆସନ୍ତୁ ଆସନ୍ତୁ -ଇଣ୍ଟରଭ୍ୟୁଟା ସାରିଦେବା - ସକାଳୁ ଖାଲି ମଂତ୍ରୀଙ୍କଠୁ ଫୋନ୍ ଆସୁଚି !

ତୃତୀୟ ଅଭିନେତା ।। କାହାପାଇଁ ?
ଚତୁର୍ଥ ଅଭିନେତା ।। ସଂଜୟ ଜେନା- ହେଇଥିବ ମଂତ୍ରୀଙ୍କ ଲୋକ !
ଦ୍ୱିତୀୟ ଅଭିନେତା ।। ବେହେରା !
ପ୍ରଥମ ଅଭିନେତା ।। ହଜୁର !
ଦ୍ୱିତୀୟ ଅଭିନେତା ।। ଇଣ୍ଟରଭ୍ୟୁ ତାଲିକାଟା ନେଇ ଆସ ।
ପ୍ରଥମ ଅଭିନେତା ।। ଆଣୁଚି ସାର୍ !
ଦ୍ୱିତୀୟ ଅଭିନେତା ।। ମୋ'ର ବି ଜଣେ କାଣ୍ଡିଡ଼େଟ୍ ଥିଲା ! ଇଫ ୟୁ ଡ଼ୋଣ୍ଟ ମାଇଣ୍ଡ ! ଇଟସ୍ ଆ' ଜେନୁଇନ୍ କେସ୍ !
ଚତୁର୍ଥ ଅଭିନେତା ।। ଚାରିଟା ପୋଷ୍ଟରୁ ଦୁଇଟା ତ ଏଇଠି ହେଇଗଲା । ଆଉ ଦୁଇଟା, ଯିଏ ପଚାଶ ହଜାର ପକେଇବ ଚାକିରୀ ତାର ।
ତୃତୀୟ ଅଭିନେତା ।। ଓ,କେ ! କାଣ୍ଡିଡ଼େଟ୍ ମାନଂକୁ ଡ଼କାନ୍ତୁ ।
ପ୍ରଥମ ଅଭିନେତା ।। ସଦାଶିବ ଦାସ ! ସଦାଶିବ ଦାସ !
(ପ୍ରବେଶ କଲା ସଦାଶିବ । ଭଲ ସ୍ୱାସ୍ଥ୍ୟ । ସହରରେ ଥିଲେ ସ୍ପୋର୍ଟସ୍ ଚାମ୍ପିଆନ୍ ହୋଇଥାନ୍ତା । ଚିହ୍ନା ପରିଚୟ ଥିଲେ ନ୍ୟାସନାଲ, ଗେମ୍ସ୍‌ରେ ଖେଳିଥାନ୍ତା । କିଂତୁ ଗରୀବ- ବାପାମା' ନଥିବା ଧୋୟା ଅଂଚଳର ପିଲା । ମେଧାବୀ ହେଲେ ମଧ୍ୟ ଚେହେରାରେ ସ୍ମାର୍ଟନେସ୍ ନାହିଁ । ମୁହଁରେ ଟିକିଏ ଟିକିଏ ଦାଢ଼ୀ । ଅତ୍ୟନ୍ତ ଭଦ୍ର । ନମସ୍କାର କଲାବେଳେ ଅଣ୍ଟା ଭାଂଗି ପ୍ରଣାମ ଜଣାଏ ।)
ସଦାଶିବ ।। ସାର୍ ନମସ୍କାର !
ଦ୍ୱିତୀୟ ଅଭିନେତା ।। ଜୁଓଲୋଜିରେ ଫାଷ୍ଟ କ୍ଲାସ ପାଇଚ ! କବାଡ଼ି ଆଉ ହକି ଖେଳୁଥିଲ !
ସଦାଶିବ ।। ସାର୍ !
ଦ୍ୱିତୀୟ ଅଭିନେତା ।। ଆଜି ସମ୍ବଲପୁରରେ ମାଛଦର କେତେ ?
ସଦାଶିବ ।। ସାର୍ ?
ତୃତୀୟ ଅଭିନେତା ।। ଜାଣିନା ? ଓ କେ ! ଡ଼ୋଣ୍ଟ ବି ନର୍ଭାସ । ଆଚ୍ଛା କହିଲ ବାପାଙ୍କ ଶଳାଙ୍କ ସ୍ତ୍ରୀଙ୍କ ଭଉଣୀଙ୍କ ପୁଅ ତମର କ'ଣ ହେବେ ?
ଚତୁର୍ଥ ଅଭିନେତା ।। ସାଇକଲ ଚକାରେ କେତୋଟି ସ୍ପୋକ୍‌ସ ଅଛି ?

ସଦାଶିବ ।। ମୁଁ ଜାଣିନି ସାର୍ !

ଚତୁର୍ଥ ଅଭିନେତା ।। ଆଉ କଣ ଜାଣିଚ ? ଜାଣିବ କେମିତି ? ଇଂରେଜୀ ମିଡ଼ିଅମ୍ ସ୍କୁଲରେ ପାଠ ପଢ଼ିନା ! ସେଣ୍ଟ୍ରାଲ ସ୍କୁଲ ବି ଦେଖିନା ... ଗାଁ ଇସ୍କୁଲରୁ ସିଧା ଚାଲି ଆସିଚ ଏଇଠିକି ! ଚପଲରୁ କାଦୁଅ ବି ଛାଡ଼ିନି ।

ସଦାଶିବ ।। ବାହାରୁ ଋଣ କରି ଯୋଉତକ ଟଂକା ଏ ଦେଶକୁ ଆସୁଚି ସବୁତ ଆପଣମାନେ ଖାଇଗଲେ ... ଆଉ ମୋ' ପାଇଁ ପଇସା କୋଉଠି ଅଛି ଯେ ପଲିସ୍ କରା ଜୋତା ପିନ୍ଧିବି ସାର୍ ? ପ୍ରଶ୍ନ ଯଦି ପଚାରିବା କଥା ପାଠରୁ ପଚାରନ୍ତୁ ।

ଦ୍ୱିତୀୟ ଅଭିନେତା ।। ଏବାବୁ କଣ ଏମିତି କହୁଛଂତି ?

ତୃତୀୟ ଅଭିନେତା ।। ଏଇଟା କୋଉ ମାଷ୍ଟର କି ଲେକଚରର୍‌ର ପୁଅ ହେଇଥିବ ବେ । ନହେଲେ ମନ ଭିତରେ ଏତେ ଗୁଡାଏ କଂପ୍ଲେକ୍ସ ଆସିଲା କୁଆଡୁ ? (ଚତୁର୍ଥ ଅଭିନେତାକୁ) ପଣ୍ଡିତ ପୁଅଙ୍କୁ କିଛି ପାଠ ପଚାରନ୍ତୁ -

ଚତୁର୍ଥ ଅଭିନେତା ।। ପାଠ ମାନେତ ଗୋଟାଏ ଜଂଗଲ ! ପୃଥିବୀର ସବୁଠାରୁ ବଡ଼ ଜଂଗଲର ନାଁ କଣ ?

ସଦାଶିବ ।। ଜଂଗଲ ତ ସଦାଶିବ ଦାସ ଭଳି ଏ ଦେଶର ହଜାର ହଜାର ଯୁବକଙ୍କର ହୃଦୟ ସାର୍ ! ଆସଂତା କାଲି ଗୋଟାଏ ଚାକିରୀ ମିଳିବ ବୋଲି ମୋ' ଭଳି ଯୋଉମାନେ ସଂଭାବନାର ସ୍ୱପ୍ନ ଦେଖୁଛଂତି ସେମାନଂକ ହୃଦୟ ହିଁ ଜଂଗଲଠୁ ବଡ଼ ଜଂଗଲ !

ତୃତୀୟ ଅଭିନେତା ।। ଆଉ ପୃଥିବୀର ସବୁଠାରୁ ବଡ଼ ଜଳପ୍ରପାତ ?

ସଦାଶିବ ।। ଜମି ଗହଣା ଆଉ ଘର ବିକି ଏ ଦେଶର ଶହ ଶହ ମା'-ବାପ ଯୋଉ ପୁଅକୁ ପାଠ ପଢ଼େଇଛଂତି ତାକୁ କେବେ ଖଣ୍ଡେ ଚାକିରୀ ମିଳିବ ବୋଲି ଅନେଇ ଅନେଇ ସେମାନଂକ ଆଖିରୁ ଲୁହଧାର ଶୁଖୁନି ସାର୍ ! ସେଇ ଆଖିରୁ ବଡ଼ ଜଳପ୍ରପାତ ଆଉ କଣ ଥାଇପାରେ ?

ଦ୍ୱିତୀୟ ଅଭିନେତା ।। ଆଉ ପୃଥିବୀର ସବୁଠାରୁ ବଡ଼ ମରୁଭୂମିର ନାଁ ?

ସଦାଶିବ ' ।। ଆପଣମାନେ ଆମ ପାଇଁ ଯୋଉ ଅନିଶ୍ଚିତ ଆସନ୍ତାକାଲି ଗୁଡ଼ାକ ରଖୁଛଂତି ସାର୍ ... ସେଗୁଡ଼ାହିଁ ମରୁଭୂମି: ସାହାରାଠୁ

ଆହୁରି ଲମ୍ବା ଆହୁରି ବିସ୍ତୀର୍ଣ୍ଣ ଅସହାୟତାର ବାଲିରେ ଭର୍ତ୍ତି ।

ତୃତୀୟ ଅଭିନେତା ।। ତମେ କିଛି ଜାଣିନା !
ଗୁଡାଏ ବକ୍ ବକ୍ କରିବାଛଡା ଆଉ କିଛି ଜାଣିନା !
ଯାଅ ।
କବିତା ଲେଖିବ ଯାଅ -

ସଦାଶିବ ।। ଦେଖନ୍ତୁ ସାର୍ ... ମୋର ଚାକିରୀଟା ନିହାତି ଦରକାର ।
ମୋର କେହି ନାହାଂତି ସାର୍ !
ଜମିବାଡ଼ି ସବୁ ବନ୍ୟାରେ ଭାସିଗଲା ।

ଦ୍ୱିତୀୟ ଅଭିନେତା ।। ସରକାର ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ ଦେଉଛଂତି ।
ଆପ୍ଲାଇ କର ।

ସଦାଶିବ ।। ସାର୍ ମୋର ଏ ଚାକିରୀଟା ନିହାତି ଦରକାର ।

ଚତୁର୍ଥ ଅଭିନେତା ।। ନିହାତି ଦରକାର ବୋଲି ଆମେ କଣ ତମକୁ ଚାକିରୀଟା ଦେଇଦବୁ ?
କିହୋ ! ଚାକିରୀ ଦବା ପାଇଁ ଆମେ କିଏ ?

ସଦାଶିବ ।। ଆପଣମାନେ ସବୁ ସାର୍ ! ହର୍ତ୍ତାକର୍ତ୍ତା !

ଚତୁର୍ଥ ଅଭିନେତା ।। ଆମେ କେହି ନୋହୁ ।
ସବୁ ଚାକିରୀ ନେତା ମାନଙ୍କ ହାତରେ ।

ତୃତୀୟ ଅଭିନେତା ।। ତମେ ଯାଇପାର । ଇଣ୍ଟରଭ୍ୟୁ ଶେଷ ହେଲା ।
(ସମସ୍ତେ ଚାଲିଯିବାକୁ ଉଦ୍ୟତ)

ସଦାଶିବ ।। ମୁଁ ଜାଣେ ମତେ ଯିବାକୁ ହବ ।
ହେଲେ ଆପଣ ବି ଜାଣି ରଖନ୍ତୁ -
ସଦାଶିବ ଦାସର କ୍ୟାରିଅର୍ ଫାଷ୍ଟ କ୍ଲାସ ।
ଜୀବନରେ କେବେ ମିଛ କହିନାଇଁ
ମୋର ଘର ନାହିଁ - ବାପ ମା ନାହାନ୍ତି - କେହି ନାହାନ୍ତି ।
ଏ ସହରରେ ଛ' ମାସ ହେଲା ଓପାସ ରହି
ଇଣ୍ଟରଭ୍ୟୁ ଦଉଛି ।
ପ୍ଲାଟଫର୍ମରେ ଶୋଉଛି । (ତା'ପରେ ଦେହସାର କଂପି ଉଠିଲା କ୍ରୋଧରେ) କାହିଁକି ?

ଏଦେଶରେ ବଂଚିବା ପାଇଁ ମୁଁ କଣ ଅଯୋଗ୍ୟ ?
(ଛାତି ତାର ସେମିତି ପଡୁଥାଏ ଉଠୁଥାଏ .....)

ଚତୁର୍ଥ ଅଭିନେତା ।। ହି ଇଜ୍ ଆ' କମ୍ୟୁନିଷ୍ଟ ।

ତୃତୀୟ ଅଭିନେତା ।। ସିମ୍ସ୍ ଟୁ ବି ଆ' ଟେରରିଷ୍ଟ !

ଦ୍ୱିତୀୟ ଅଭିନେତା ।। ମାଇଟ୍ ବି ଆନ୍ ଏଣ୍ଟାଇ-ସୋସିଆଲ!

ସଦାଶିବ ।। କୁହନ୍ତୁ ମତେ ଚାକିରୀ ଖଣ୍ଡେ ମିଳିବ କି ନାଇଁ ? ମୁଁ ସେମିତି କିଛି ବଡ଼ ଚାକିରୀ ମାଗୁନି । ମୋର ରହିବା ପାଇଁ ଘରଟିଏ ଆଉ ଦିଓଳି ଦି'ମୁଠା ପଖାଳ ମିଳିଗଲେ ମୁଁ ବି କଂପିଟିଟିଭ୍ ଦେଇ ଆପଣଂକ ଚୌକିରେ ବସି ପାରିବି ସାର୍! ଗିଭ୍ ମି ଏ ଚାନ୍ସ ।

(ଏଇ କଥା ଗୁଡ଼ାକ କହିଲା ବେଳେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଅଭିନେତାମାନେ ଠିଆ ହୋଇ ପଡ଼ିବେ । ସେମାନେ ସତେ ଯେମିତି କୌଣସି ହିଂସ୍ର ଜନ୍ତୁ ଦ୍ୱାରା ଆକ୍ରାନ୍ତ ହୋଇ ପଡୁଛଂତି ଏବଂ ନିଜକୁ ରକ୍ଷା କରିବା ପାଇଁ ଜନ୍ତୁଟି ଉପରକୁ ପ୍ରତି ଆକ୍ରମଣ କରିବା ଆବଶ୍ୟକ ।)

ଏ ଦେଶରେ ଏତେ ଲୋକ ଏତେ କଥା ମାଗୁଛଂତି, ଏତେ କୋଠା ତିଆରି ହେଉଛି, ଏତେ କଳକାରଖାନା ବସୁଛି, ଏତେ ଆଲୁଅ ଲାଗୁଚି ... ମତେ କାହିଁକି ଏଇ କିରାଣୀ ଚାକିରୀ ଖଣ୍ଡେ ମିଳିବ ନାହିଁ ?

ଦ୍ୱିତୀୟ ଅଭିନେତା ।। ଚାକିରୀ ନାହିଁ -

ତୃତୀୟ ଅଭିନେତା ।। ଚାକିରୀ ନାହିଁ -

ଚତୁର୍ଥ ଅଭିନେତା ।। ଚାକିରୀ ନାହିଁ -

(ସଦାଶିବ ପ୍ରତ୍ୟେକଙ୍କ ପାଖକୁ ଯାଇ ମିନତି କଲାଭଳି ଅଭିନୟ କରୁଛି)

ଦ୍ୱିତୀୟ ଅଭିନେତା ।। ଚାକିରୀ ନାହିଁ !

ତୃତୀୟ ଅଭିନେତା ।। ଚାକିରୀ ନାହିଁ !

ଚତୁର୍ଥ ଅଭିନେତା ।। ଚାକିରୀ ନାହିଁ !

(ସେମାନେ ସଦାଶିକୁ କେନ୍ଦ୍ରରେ ରଖି ତାର ଚାରିପଟେ

ବୁଲୁଛଂତି । ସଦାଶିବ ''ନାହିଁ'' ''ନାହିଁ''ର ସମୁଦ୍ର ଭିତରେ ଯେମିତି ଉବୁଟୁବୁ ହେଉଥିଲା । ଏଇଥର ସଦାଶିବକୁ ସେମାନେ ଆଉ ମୁହଁରେ 'ନାହିଁ' ବୋଲି କହୁନାହାନ୍ତି ରାସ୍ତାରୁ, ଆକାଶରୁ, ସମାଜରୁ ଏବଂ ସମଗ୍ର ପୃଥିବୀରୁ ସଦାଶିବ ପାଇଁ କେବଳ ''ନାହିଁ'' ଶବ୍ଦଟିଏ ପ୍ରତିଧ୍ୱନିତ ହେଉଛି ।

ଆଲୋକ ପଡୁଚି କେବଳ ସଦାଶିବ ଉପରେ । ତାର ଚାରିପଟ ଅଂଧାର । ସେଇ ଅଂଧାର ଭିତରେ ଆଉ ଅଫିସର ନାହାନ୍ତି, କର୍ତ୍ତୃପକ୍ଷ ନାହାଂତି, କୌଣସି ନିର୍ଦ୍ଦିଷ୍ଟ ଲୋକ ନାହାନ୍ତି । ଅଛି କେବଳ ଏକ ସର୍ବଗ୍ରାସୀ ଅଂଧାର । ସେଇ ଅଂଧାର ଭିତରୁ ଶୁଭୁଥିଲା ହଜାର ହଜାର ସଦାଶିବଙ୍କର ଦାବୀ ଓ ପଟୁଆରର କୋଳାହଳ ।

''ଶ୍ରମିକ ଏକତା ଜିଂଦାବାଦ୍ !''

ଜିନ୍ଦାବାଦ୍ ! ଜିନ୍ଦାବାଦ୍ !

''ଆମର ଦାବୀ ପୂରଣ ହେଉ !''

ପୂରଣ ହେଉ ! ପୂରଣ ହେଉ !

''ଭୋକିଲା ପେଟରେ ଖାଦ୍ୟ ଦିଅ!

ଖାଦ୍ୟ ଦିଅ ! ଖାଦ୍ୟ ଦିଅ !''

କ୍ରମଶଃ ଏଇ ସ୍ଲୋଗାନ୍‌ର ଶବ୍ଦ ଓ ଶୋଭାଯାତ୍ରା ସବୁ ଚାଲିଯିବ ଅଧା ଅଂଧାର ଓ ଅଧା ଆଲୁଅରେ ପଡ଼ିରହିଥିବା ମଂଚ ଉପରେ, ଯେଉଁ ଟିକକ ଆଲୁଅ ପଡ଼ିଥିଲା ତାର ରଂଗ ମଧ୍ୟ ନାଲି ।

ନୀରବତା ।

ତାରି ଭିତରେ ଗୁଡ଼ାଏ ବଂନ୍ଧୁକଧାରୀ ପୋଲିସ ଦୌଡ଼ା ଦୌଡ଼ି କରୁଥିଲେ । ଓ ଗୋଟିଏ ସାଇରନ୍ ତୀବ୍ରସ୍ୱରରେ ବାଜୁଥିଲା ।

ନୀରବତା ।

ସଦାଶିବ ସେଇଠି ଦୌଡ଼ି ଦୌଡ଼ି ଚାଲିଛି ।

କେତେବେଳେ ତାକୁ ପୋଲିସ୍ ଗୋଡ଼େଇଚି ତ

କେତେବେଳେ ପେଟର ଭୋକ । କେତେବେଳେ ନାହିଁ ନାହିଁର ପଟୁଆର ଗୋଡ଼େଇଚି ତ ଆଉ କେତେବେଳେ ବଂଚିବା ପାଇଁ ଆଉ ସଂଗ୍ରାମ କରିବାପାଇଁ ପ୍ରବଳ ଇଚ୍ଛାଟିଏ ତାକୁ ଗୋଡ଼େଇଚି । ସଦାଶିବ ଧଇଁସଇଁ ହୋଇଯାଉଛି ।)

ସଦାଶିବ ।। ଯେଉଁ ସମାଜ ମୋତେ ଚାହେଁନା
ମୁଁ ମଧ ସେଇ ସମାଜକୁ ଚାହେଁନା,
ଯେଉଁ ଲୋକମାନେ ଚାହାନ୍ତି ନାହିଁ ମୁଁ ମୁଠାଏ
ଖାଇବାକୁ ପାଏ ବୋଲି
ମୁଁ ମଧ ଚାହେଁ ନାହିଁ ସେମାନେ ମୁଠାଏ ଖାଆନ୍ତୁ !
ମୁଁ କାହାରି ଅନିଷ୍ଟ କରିନି
ମୁଁ କାହାରି କିଛି କ୍ଷତି କରିନି -
ସମସ୍ତେ ଖାଲି ମୋର କ୍ଷତି କରି ଚାଲିଛଂତି !
କିଏ ମୋର କ୍ଷତି କରିଛି ମୁଁ ଜାଣେନା
କିଏ ମତେ ବଂଚିବାର ଅଧିକାରରୁ ବଂଚିତ କରିଛି
ମୁଁ ଜାଣେନା !
କିଂତୁ ମୁଁ ଏଇ ଅସାମାଜିକ ଗୁଣ୍ଡା ନେତା ମାନଂକୁ
ଛାଡ଼ିବିନି ।
ମୁଁ ଏଇ ଚରଣ ଚୁଟିଆ ଅଫିସର ମାନଙ୍କୁ ଛାଡ଼ିବିନି ।
ଦରକାର ନାଇଁ ଏଇ ସାର୍ଟିଫିକେଟ !
ସଦାଶିବ ଦାସ ଯଦି ଏ ସମାଜର ଲୋକ ନୁହେ
ଜଣେ ଅସାମାଜିକ ହେବାର କ୍ଷମତା ମଧ ତା ପାଖରେ
ଅଛି ।

(ସଦାଶିବ ଝୁଲା ମୁଣିରୁ ସାର୍ଟିଫିକେଟ ଗୁଡ଼ାକୁ ବାହାର କଲା । ପକେଟରୁ ଦିଆସିଲି ବାହାର କରି ଜଳେଇଲା । ପାଗଳ ଭଳି ହସ ଶୁଭୁଥିଲା ଆବହ ସଂଗୀତ ବଦଳରେ । ମଂଚରେ ସଂଧ୍ୟାର ଆଲୋକ । ଯୋଉଠି ସେ ସାର୍ଟିଫିକେଟ ପୋଡୁଥିଲା ସେଇଟା ବୋଧହୁଏ ଗୋଟାଏ ଷ୍ଟେସନ । ଲୋକଙ୍କର କୋଳାହଳ । ଟ୍ରେନ୍ ଯିବା ଆସିବା କରିବା

ଶବ୍ଦ । ବିଭିନ୍ନ ହକରଙ୍କର ଡ଼ାକ । ପଛପୁ ଆସିଲା ରାଜା, ବୟସ ୨୨ ବା ୨୩ । କଳା ମଜବୁତିଆ ଚେହେରା । ବେଉଷା ଗୁଣ୍ଡାଗିରି । ସେ ଏରିଆର ଦାଦା । ସଦାଶିବର ସହରୀ ବଂଧୁ । ସୁଖଦୁଃଖର ସାଥୀ ।)

ରାଜା ।। କିବେ ସଦେଇ !
କଣ ଜାଳୁଚୁ କିରେ ?

ସଦାଶିବ ।। (ଶୁଣିନି, ଜାଳୁଚି)

ରାଜା ।। ସଦେଇ !

ସଦାଶିବ ।। କଣ !

ରାଜା ।। ପଚାରୁଚି ପରା କଣ ଜାଳୁଚୁ ?

ସଦାଶିବ ।। ପରିଚୟ । ମୋର ପୁରୁଣା ପରିଚୟଟାକୁ ଜାଳି ଦେଲିରେ ରାଜା ।

ରାଜା ।। ଚୁପ୍‌ବେ ! ଶଳା ମୋ' ଆଗରେ ପୁଣି ସେଇ ପାଠ ଦେଖେଇଲୁ ?
ଫାଷ୍ଟ ଡ଼ିଭିଜନ୍ ପାଇଚୁ ବୋଲି ଫୁଟାଣି ?

ସଦାଶିବ ।। ଫାଷ୍ଟ ଡ଼ିଭିଜନ ଟାକୁ ଜାଳି ଦେଇଛି । ଅନେକ ବେଳୁ ପୋଡ଼ି ଜଳି ସେଇଟା ପାଉଁଶ ହେଇଗଲାଣି ।

ରାଜା ।। ଏଁ କଣ କହିଲୁ ? ଶଳା ପଗଲ୍ !
(ଝାମ୍ପିଗଲା ସେଇ ପୋଡ଼ା କାଗଜ ଗୁଡ଼ା ଉଦ୍ଧାର କରିବା ପାଇଁ । ପାରିଲାନି; ହାତଟା ଯାହା ଜଳିଗଲା ।)

ରାଜା ।। ସଦେଇ !

ସଦାଶିବ ।। ହାତ ପୋଡ଼ିଯିବ ! ସେଗୁଡ଼ା କାଇଁକି ଗୋଟଉଚୁ ରାଜା ତୋ' ହାତ ...

ରାଜା ।। ଶଳା ... (ଧଇଁସଇଁ ହେଇ) ସବୁ ସାଂଗତ ଚୋର, ଡ଼କେଇତ-ପକେଟମାରୁ । ତୁ ଶଳା ଗୋଟେ ଫାଷ୍ଟ କ୍ଲାସ ଏମ୍.ଏ.ସାଂଗ ଥିଲୁ ବୋଲି ତୋ' ପାଇଁ ମୋ' ମନରେ କେତେ ଗର୍ବ ଥିଲା ରେ ସଦେଇ ! ଶଳା - ଶେଷକୁ ମୋ' ଗର୍ବଟାକୁ ତୁ ଦିଆସିଲି କାଠି ମାରି ଜାଳିଦେଲୁ ? (କଂଠରେ ଆର୍ଦ୍ରତା)

ସଦାଶିବ ।। ଭାବିଥିଲି ତୁ' ମତେ ଭଲ ପାଉଥିଲୁ ବୋଲି । ହେଲେ ତୁ' ଶଳା ମୋର ସାର୍ଟିଫିକେଟ ଗୁଡ଼ାକୁ ଭଲ ପାଉଥିଲୁବେ ?

ରାଜା ।। କାହା ଉପରେ ଅଭିମାନ କରି ଏ ସାର୍ଟିଫିକେଟ ଗୁଡ଼ା ପୋଡ଼ି ଦେଲୁବେ ଗାଁ ବାଲା ?
ମୋରତ ଶଳା ବାପା ନାଇଁକି ମା' ନାଇଁ
ଡଷ୍ଟବିନ ତଳେ ବଡ଼ ହେଇଚି ଡ଼ଷ୍ଟବିନ ତଳେ ଚାଲିଯିବି ।
ହେଲେ ତୋର ତ ସମସ୍ତେ ଅଛଂତି ।
ତୁ ଶଳା କାଇଁକି ଏମିତି ଛତରଖିଆଙ୍କ ପରି ହଉଚୁ ?

ସଦାଶିବ ।। ମୋର ବି କେହି ନାହାଂତି ।

ରାଜା ।। ଆବେ ମୁଁ ଅଛି ବେ !
କେହି ନାହାନ୍ତି ବୋଲି କଅଣ କହୁଚୁ ?
କେହି ନଥିଲେ ରାଜା ଅଛି !
କହ ତୋର କଣ ଦରକାର ? ଖାଇବୁ ?
ଚାଲ ମୋ' ସାଂଗରେ ।
କିଏ କଣ କହିଚି ତତେ ? ଖାଲି ନାଁଟା କହ !
ଶାଲେ କା ମୁଣ୍ଡ ଲାକେ ତେରେ ପୈରୋଁପେ ରଖଦୁଁଗା ।

ସଦାଶିବ ।। ମୁଁ ଆଜିଠୁ ଦାଗୀ ତାଲିକାରେ ନାଁ ଲେଖେଇବି ରାଜା !
ମତେ କାମ୍ ଦେ !
ମୁଁ ଏ ସମାଜଟାକୁ ଜାଳି ଦେବାକୁ ଚାହେଁ ।
ମତେ କାମ ଦେ' ରାଜା !
କହ ମୁଁ କଣ କରିବି ?
ପକେଟ ମାରିବି ? ଛୁରା ପେଲିବି ?
ଦେ' ... ମତେ ଛୁରୀଟା ଦେ !

ରାଜା ।। ସଦା ! ପାଗଳ ହେଇଗଲୁ ନା କଣ ?

ସଦାଶିବ ।। ଦେ', ମତେ ତୋ' ଛୁରୀଟା ଦେ' !
(ରାଜା ମନା କରୁଛି, ଆଉ ସଦାଶିବ ଜୋର୍ କରି ତାକୁ ତଳେ ଗଡ଼େଇ, ତା' ପକେଟରୁ ସ୍ପ୍ରିଙ୍ଗ୍ ଦିଆ ଛୁରାଟା ବାହାର କରିଛି)

ରାଜା ।। ସଦେଇ ! ଆବେ ଇଏ କଣ ହଉଚୁ ?

ସଦାଶିବ ।। ସମାଚର ସେଇ ଦୁଷ୍ଟ ବ୍ରଣ ଗୁଡ଼ାକ ଉପରେ ମୁଁ ଛୁରା ଚଳେଇବି ରାଜା !
ଯୋଉ ମାନଙ୍କ ପୂଜ ରକ୍ତରେ ସମାଜ ପଚିସଢ଼ି ଯାଉଚି ...
ମୁଁ ସେମାନଂକୁ ସାଫ୍ କରିଦେବି ।
କହ ରାଜା !
ତୁ' ଆଜି ଯାହା କହିବୁ
ମୁଁ ସେୟା କରିବି ।
ମୁଁ ଆଜି ୱାଗନ୍ ଭାଂଗିବି, ମଡ଼ର କରିବି, ବ୍ୟାଙ୍କ ଲୁଟ୍ କରିବିଁ, ବସ୍ ଜାଳିବି
ତୁ' ଯାହା କହିବୁ କରିବି
ମୋର ପଇସା ଦରକାର
ଭଲ ଜାତିରେ ଜନ୍ମ ହେଇଚି ବୋଲି ଖାଇବାକୁ ମିଳିଲାନି
ଭଲପାଠ ପଢ଼ିଥିଲି ବୋଲି ଚାକିରୀ ମିଳିଲାନି
ଭଲ ବାଟରେ ରୋଜଗାର କରିବା ପାଇଁ ଏ ବାସ୍‌ଟାଡ଼ ପଲିଟିସିଆନ୍ ମାନେ ମତେ ଚାନ୍ସ ଦେଲେନି ।
ମୁଁ କିଂତୁ ବଂଚିବି ରାଜା !
ସଦାଶିବ ଦାସ ବଂଚିବ ।
(ସଦାଶିବ ଏଇ କଥାସବୁ କହିବାର ଶେଷ ଅଂଶରେ ଧର୍ମଘଟ ହରତାଳର ସମବେତ ସ୍ୱର କ୍ରମଶଃ ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଉଠିଲା ।
ସ୍ଲୋଗାନ ଗୁଡ଼ିକ ନିମ୍ନମନେ ତିନିଥର ଲେଖା ଦିଆଯିବା ଉଚିତ । ସାଉଣ୍ଡ ସିଷ୍ଟମ୍‌ରେ ଶବ୍ଦ ପ୍ରକ୍ଷେପଣ ଯଦି ଠିକ୍‌ଭାବେ କରାଯାଇ ନପାରୁଛି ତା'ହେଲେ ଟେପ୍ ରେକର୍ଡର ବ୍ୟବହାର କରାଯାଇ ଶବ୍ଦକୁ କମ୍/ବେଶୀ କରାଯାଇ ପାରିବ ।
ଶ୍ରମିକ ଏକତା ଜିନ୍ଦାବାଦ୍ !
ଛାତ୍ର ଏକତା ଜିନ୍ଦାବଦ୍ !
ଆମର ଦାବୀ ପୂରଣ ହେଉ !
କ୍ରମେ ଦେଖାଗଲା ୪ ଜଣ ଅଭିନେତା ପ୍ଲାକାଡ଼ ଧରି ସ୍ଲୋଗାନ ଦେଇ ଦେଇ ପ୍ରବେଶ କଲେ ମଂଚ ଉପରକୁ ।
ରାଜା ଓ ସଦାଶିବ ମଂଚର କେନ୍ଦ୍ର ବିନ୍ଦୁରେ ଠିଆ ହୋଇଥିଲେ ।

ଅଭିନେତାମାନେ ସ୍ଲୋଗାନ ଦେଇ ସେମାନଂକ ଚାରିପଟେ ଘୁରିବାକୁ ଲାଗିଲେ ଏବଂ ଚାଲିଗଲେ ।)

ରାଜା ।। ଚାରିଆଡ଼ ଧର୍ମଘଟ .... ହରତାଳ !

ସଦାଶିବ ।। ଏଇଟା ଦେଶନୁହେ - ଗୋଟାଏ ହତାଶାର ଜଂଗଲ !
ଏଇଠି ବାଘ ମାତିଛି ।

ରାଜା ।। କଳା ପତାକା !
ରାଜଧାନୀ ଚଲୋ !
ଆମରଣ ଅନଶନ !

ସଦାଶିବ ।। ଲୁହ ବୁହା ଗ୍ୟାସ
ଲାଠି ମାଡ଼ ! ଗୁଳିଚାଳନା
ଶହେ ଚଉରାଳିଶ ... କର୍ଫ୍ୟୁ !!

ରାଜା ।। ସବୁକାଳେ ନିଜ ସ୍ୱାର୍ଥ ପାଇଁ ପାଗଳ !
ପଲିଟିସିଆନ୍‌କଠୁ ଆରମ୍ଭ କରି ଅଫିସର ମାନଂକ ପର୍ଯ୍ୟନ୍ତ ।
ଅଥଚ ଶଳେ କହିଲା ବେଳକୁ
ଦେଶକଥା କହିବେ ।

ସଦାଶିବ ।। ଗାଦିରେ ବସିବା ପାଇଁ ଲୋକଙ୍କୁ ଭାଗ ଭାଗ କରିଦେବେ ।

ରାଜା ।। ଆମର କଣ ଗଲା ଶଳା ?
ଏତେ କଥା ଚିଂତା କରିବା ପାଇଁ ଆମେ କଣ ଠିକା ନେଇଚୁ ?
ମାଲ ମିଳିଲେ ଆମେ ସବୁ କରିବୁ ।

ସଦାଶିବ ।। ହଁ ରାଜା ... ମୁଁ ସବୁ କରିବି ।

ରାଜା ।। ବସ୍ ପୋଡ଼ି ପାରିବୁ ?

ସଦାଶିବ ।। ପାରିବି ।

ରାଜା ।। ଡ଼ିନା-ମାଇଟ୍ ଲଗେଇ ପାରିବୁ ?

ସଦାଶିବ ।। ପ୍ରଥମେ ଉଡ଼େଇବି ଚର୍ବି ବଢ଼େଇ ଜଳାଟଂକାରେ ଆମକୁ ଶାସନ କରୁଥିବା ସେଇ ଲୋକ ଗୁଡ଼ାକୁ ।

ରାଜା ।। ଦରକାର ନାଇଁ ।
ସେ ଶଳାଙ୍କର ଆମକୁ ପ୍ରବଳ ଡ଼ର ।
ଯେତେବେଳେ ଦରକାର ଟଂକା ଦେବେ ।

ଆଉ ତାଂକ ଝିଅ ବୋହୂଙ୍କୁ ଉଠେଇ ନେଇ
ଯଦି ଦି' ଚାରିଦିନ ରଖି ଦେଇ ପାରିବୁ ତା' ହେଲେ
ଦି'ଚାରିଲକ୍ଷ ଦେଇଦେବେ। କଳା ଟଂକାରୁ।

ସଦାଶିବ ।। କହ ରାଜା ? କୋଉ ବାସ୍‌ଟାଡ଼ର ଝିଅକୁ ଉଡ଼େଇ ନେବି ?
ତା'ବି କହ ! ମୁଁ ପାରିବି।

ରାଜା ।। ସାବାସ୍ ! ଚାଲ ମୋ' ସାଂଗରେ।
ତୁ' ବଂଚିବାର ବାଟ ପାଇଗଲୁରେ ସଦା !
ଏଣିକି ଆଉ ଅସୁବିଧା ନାହିଁ।

ସଦାଶିବ ।। ବଂଚିବା ପାଇଁ ମୁଁ ସବୁ ପାପ କରିବାକୁ ପ୍ରସ୍ତୁତ ରାଜା।
ଅସାମାଜିକ, ମଡ଼ରର ହବାକୁ ରାଜି।

ରାଜା ।। ରାଜି ତ ରାଜି ଶଳା ଏଡ଼େ ବଡ଼ ପାଟିରେ କାହିଁକି କହୁଚୁ ?
ଶଳା ଭିତରେ ଭିତରେ ଡ଼ରୁଚୁ କିବେ ?

ସଦାଶିବ ।। ନା ..

ରାଜା ।। କେଜାଣି ଶଳା ! ସବୁ ପାଠୁଆ ଲୋକେ ଏୟା କରନ୍ତି।
କାମଟା କରିସାରି ଅନୁତାପ କରନ୍ତି।
ତୁ' ସେମିତି କରିବୁନି ତ ସଦା ?

ସଦାଶିବ ।। କାହିଁକି କରିବି ?
ଏ ଦେଶର ନେତାମାନେ ଯଦି ଅନ୍ୟମାନଂକୁ
ମଡ଼ର କରିପାରୁଛଂତି କ୍ଷମତା ପାଇଁ -
ବଂଧୁକ ଦେଖେଇ ଭୋଟ ଛଡ଼େଇ ନଉଛଂତି ନିଜ ସପକ୍ଷରେ
ଆଉ ତା' ପରଦିନ ଫୁଲମାଳ ପିନ୍ଧି
ଧର୍ମସଭାରେ ଭାଷଣ ଦେଇ ପାରୁଛଂତି
ମୁଁ କାହିଁକି ପାରିବିନି ରାଜା ?
ନିଶ୍ଚୟ ପାରିବି !

ରାଜା ।। ଆ' ... ଆ' ... ମୋ' ସାଂଗରେ !
(ରାଜା ସଦାକୁ ନେଇ ଚାଲିଯିବା ପରେ ସାଂଗେ ସାଂଗେ
ମଂଚ ଅଂଧାର। ଏବଂ ସେଇ ସ୍ଲୋଗାନ :
''ବେକାର ପାଇଁ ଚାକିରୀ ଦିଅ।
ଘର ଦିଅ - ଭାତ ଦିଅ
ଦରଦାମ କମେଇ ଦିଅ

ନହେଲେ ଗାଦି ଛାଡ଼ିଦିଅ !
ଛାତ୍ର ଏକତା ଜିଂଦାବାଦ !
ଶ୍ରମିକ ଏକତା ଜିଂଦାବାଦ !
ହତ୍ୟାକାରୀ କିଏ ?
ଶାସନ କରୁଛି ଯିଏ ?
XX XX XX
(କ୍ରମେ କ୍ରମେ ଏଇ ସ୍ଲୋଗାନର ସ୍ୱରରେ ମଂଚ ପୂର୍ଣ୍ଣ ହେଇଯିବ ସାଧାରଣ ଦର୍ଶକଟିଏ ବିବ୍ରତ ହୋଇଗଲା ପର୍ଯ୍ୟନ୍ତ ।
ତାପରେ ବଂଧୁକ ଫୁଟିବା ଶବ୍ଦ ।
ମାର୍ଚ୍ଚିଂ ଶବ୍ଦ । ହୁଇସିଲ ଶବ୍ଦ ।
ଅଂଧାର ଓ ଝାପ୍‌ସା ଆଲୁଅ ଭିତରେ ଏସବୁ ଚାଲିଥିବା ବେଳେ ଦେଖାଗଲା ସମଗ୍ର ସହରଟା ଢଳୁଚି ସାଇକ୍ଲୋରୋମାରେ ।
ଅଂଧାର ।
ଟିକରା କିମ୍ୱା ଡ୍ରମ୍‌ର ରୋଲ୍ (Roll) ଭିତରେ ଅଲୋକ ସ୍ପଷ୍ଟ ହୋଇ ଉଠିଲା ।
ପ୍ରବେଶ କଲେ ଅଭିନେତାମାନେ ।)

ପ୍ରଥମ ଅଭିନେତା ।। ଆରେ ହେ ନାଟୁଆ ପିଲେ !
ଶୁଣ ଶୁଣ ଶୁଣ !
ଅରଣ୍ୟ କାଣ୍ଡରେ ଶୁଣ ବାଘର ପୁରାଣ
ଆରେ ନର୍କରୁ ଯେ ଆସିଛଂତି ଶଇତାନ ଗଣ
କିଣାବିକା କରିବାକୁ ଲୋକଂକ ଜୀବନ !

ଦ୍ୱିତୀୟ ଅଭିନେତା ।। କେତେ ପଇସା ମିଳିବ ?

ତୃତୀୟ ଅଭିନେତା ।। ଆହେ ପଇସା ମିଳୁଚି ବୋଲି
ତମେ କଣ ନିଜକୁ ବିକିବ ?

ଦ୍ୱିତୀୟ ଅଭିନେତା ।। ମନେକର ଆମେ ନିଜକୁ ବିକୁବୁ !
(ଚତୁର୍ଥ ଅଭିନେତାଙ୍କ ପ୍ରବେଶ)

ଚତୁର୍ଥ ଅଭିନେତା ।। କଣ କହିଲ ? ନିଜକୁ ବିକିବୁ ?
ଆମେ ସେଇଠୁ ତମକୁ ବାଡ଼େଇବୁ ।

ହଇହେ ! ସହର ଗୋଟାକଯାକ ଜଳୁଚି
ସେଇଥିରେ କଣନା ଷ୍ଟ୍ରାଇକ୍‌ଟା ଆରମ୍ଭ କରିଦେଇ
ଯିଏ ଯୁଆଡ଼େ ଛୁ' ।
ଦ୍ୱିତୀୟ ଅଭିନେତା ।। ପଇସାଟା ମିଳିଗଲେ ହେଲା ।
କଣ ମିଳିବ ସେଇ ଷ୍ଟ୍ରାଇକ୍‌ରୁ ?
ଆମେ ସ୍ୱାଧୀନ ।
ଆମ ଉପରେ ଯିଏ ଅତ୍ୟାଚାର କରିବ
ଏଇଠି ରକ୍ତପାତ ହେଇଯିବ ।
ରକ୍ତର ସୁଅରେ ଏଠି ରାସ୍ତା ଭାସିଯିବ ।
ଚତୁର୍ଥ ଅଭିନେତା ।। ଆମେ ଜାଣୁ ।
ଯୁଗେ ଯୁଗେ ଏକଥା ଘଟିଚି ।
ଜଙ୍ଗଲରେ ଯେତେବେଳେ ବାଘ ମାତିଯାଏ
ନିରୀହ ଜନତାଙ୍କର କାଛ ପୁରିଯାଏ ।
ପ୍ରଥମ ଅଭିନେତା ।। ଠିକ୍ କଥା ।
ଠିକ୍ ଠିକ୍ ଠିକ୍ ଠିକ୍ ଠିକ୍ !
ଆହେ ଅରଣ୍ୟକାଣ୍ଡରେ ଏଠି ବାଘ ଡ଼େଉଁଅଛି
ବାଟରେ ଘାଟରେ ବସି ଉତ୍‌ପାତ କରୁଛି
କେତେବେଳେ ବାଘ ଡ଼ିଏଁ ମଣିଷ ମନରେ
ଭୋକ ତାର ମରିଯାଏ ରକ୍ତ ଶୋଷିଦେଲେ ।
ତୃତୀୟ ଅଭିନେତା ।। ଠିକ୍ ! ସାଧୁ ! ସାଧୁ !!
ଗୁରୁଦେବ ଉଚିତ କହିଲେ ।
ପ୍ରଥମ ଅଭିନେତା ।। ଆହେ ନାଟୁଆ ପିଲାଏ ଶୁଣ !
ଜନତା ଜନାର୍ଦ୍ଦନ ମଧ୍ୟ ଶୁଣ !
ଅରାଜକ ଶାସନରେ ବାଘର ଭିଆଣ ।
ମଣିଷ ମାଉଁସ ଅତି ସୁସ୍ୱାଦୁ ଅଟଇ
ଅସୁର କ୍ଷମାତାଶକ୍ତି ତାହାକୁ ଯେ ଖାଇ
ହେଣ୍ଟିମାରି ଡ଼େଉଁଅଛି ଆକାଶେ ବତାସେ
ହେଣ୍ଟାଳ ଶୁଭୁଚି ତାର କୁଟୀରେ ଉଆସେ
ବାଘ ରାଜା ହେଇପାରେ ଦେଶରେ

ଅରଣ୍ୟେ
ଇଚ୍ଛା ହେଲେ ବସିଯିବ
ହୃଦ-ସିଂହାସନେ ।

ତୃତୀୟ ଅଭିନେତା ।। ଆଚ୍ଛା ଗୁରୁଦେବ ! ବାଘତ ମାତିଲା
ସଭ୍ୟତା ବି ଧ୍ୱଂସ ହେବା ଦିନ ଆସିଗଲା ।
ଆମେ ଏ ପରିସ୍ଥିତିରେ କଣ କରିବା ?

ଦ୍ୱିତୀୟ ଅଭିନେତା ।। ଠିକ୍ କଥା ।
ଜଙ୍ଗଲରେ ଲୁଚିବା ନା
ଦାଣ୍ଡରେ ଡେ଼ଇଁବା ?

ଚତୁର୍ଥ ଅଭିନେତା ।। ବାଘ ଆମ ବୁଢ଼ାମାମୁଁ
ସାଙ୍ଗରେ ରହିବା,
ଆଦିମ ଯୁଗରୁ ସିଏ ରାଜା ଏବଂ
ଆମ୍ଭେମାନେ ତାଂକ ଭକ୍ତ ପ୍ରଜା ।

ତୃତୀୟ ଅଭିନେତା ।। ଅସମ୍ଭବ ।
ଜଙ୍ଗଲ କାଟିବୁ ଆମେ ବାଘକୁ ମାରିବୁ ।

ପ୍ରଥମ ଅଭିନେତା ।। (ହସିଲେ)
ବାଘକୁ ମାରିବ ?
ହା ହା ହା ହା ହା -
ଆହେ ବାଘ ପରା ଏଠି ଏକ ପୋଷା ଜନ୍ତୁ
ଜନ୍ତାରେ ଶୋଇଚି ବୋଲି ମନ କିନ୍ତୁ କିନ୍ତୁ
ବେଳେ ବେଳେ ତା' ଭିତରେ ଡ଼ିଆଁ ଡେ଼ଇଁ କରେ
ଅଜ୍ଞାନୀ ଲୋକଙ୍କୁ ନେଇ ଅଂଧାର ଚଖାଏ ।
ବାଘର ପଞ୍ଜରା ହାଡ଼ ତଳେ ଅହଂକାର
ବାଘର ଜୀବନ ଅଟେ ଅତି ନିର୍ବିକାର
ବାଘକୁ ଘାଉଡ଼ା କଲେ ଉତ୍ପାତ କରଇ
ଖାଲଢ଼ିପ ନ ମାନିଣ ହିଂସା ଆଚରଇ
ବାଘକୁ ରଖିଲେ ବାଂଧି ଅତି ଉପକାର
ନାନା ମୁନି ନାନା ମତେ କରନ୍ତି ବିଚାର
ବୁଝିଲ ଅଭିନେତା ମାନେ !

ବାଘକୁ ମୁଁ ନଚେଇବି ଟିକିରା ବଜେଇ
ତମେ ସବୁ ଅଭିନେତା ନାଚ ଥେଇ ଥେଇ ।

ଦ୍ୱିତୀୟ ଅଭିନେତା ।। କାହାପାଇଁ ନାଚିବୁ ?
ବାଘ ସାଙ୍ଗରେ ନାଚ ନାଚି ନାଚି ଆମେ କୋଉଠିକି ଯିବୁ ?

ତୃତୀୟ ଅଭିନେତା ।। ଜଙ୍ଗଲ ପର୍ଯ୍ୟନ୍ତ

ଚତୁର୍ଥ ଅଭିନେତା ।। ତା'ହେଲେ ଏ ସଭ୍ୟତା ଆମକୁ ବର୍ଜନ କରିବାକୁ ପଡ଼ିବ ?

ଦ୍ୱିତୀୟ ଅଭିନେତା ।। ଆଉ ଉପାୟ ନାହିଁ ।

ଚତୁର୍ଥ ଅଭିନେତା ।। ଏତେ ସବୁ ମଣିଷର କୃତିତ୍ୱ
ସଂଗୀତ, କଳା, ମାନବିକ ଚିଂତା
ହୃଦୟର କଥା
ଏ ସବୁର କିଛି ମାନେ ନାହିଁ ?

ତୃତୀୟ ଅଭିନେତା ।। କିଛି ମାନେ ନାହିଁ ।
ଏଠି ଖାଲି ଶୁଭୁଅଛି
କେଉଁ ଏକ ଦୂରନ୍ତ ଅରଣ୍ୟ ଭେଦି
ଝରୁଥିବା ସ୍ରୋତର ଶବ୍ଦ
ବୋଧହୁଏ କେଉଁ ଏକ ଅଂଧନଦୀ
କେଉଁଠୁ ଆସୁଚି ଝରି ଯିବ କୋଉଠିକି

ପ୍ରଥମ ଅଭିନେତା ।। କହି ହେଉ ନାହିଁ ।
(ଟିକିରା ବଜାଇଲେ)
ଆରେ, ଚାଲୁରେ ଚାଲୁରେ ଖେଳ
ଜଂଗଲରେ, ନଦୀର ସୁଅରେ
କିଏ ଏଠି ବୃଦ୍ଧ ବ୍ୟାଘ୍ର
କିଏ ପୁଣି କିମ୍ଭୀର ଜଳରେ
ସମୁଦ୍ରେ ଲାଗୁରେ ନିଆଁ ଆକାଶରେ ସାଇରନ ବାଜା
ଇସ୍କୁଲରେ ହରତାଳ
ବଡ଼ଦାଣ୍ଡେ ବାଘମାମୁଁ ରଜା ।
(ପ୍ରଥମ ଅଭିନେତା କ୍ଳାନ୍ତ ହୋଇ ବସିଗଲେ । ଅନ୍ୟ ଅଭିନେତାମାନେ ବାଧ୍ୟ ଛାତ୍ର ପରି ତା'ଙ୍କ ପାଖକୁ ଆସିଲେ ।)

ତୃତୀୟ ଅଭିନେତା ।। ଆଚ୍ଛା ଗୁରୁଦେବ,
ଆମ କାହାଣୀରେ ସଦାଶିବ ବୋଲି ଯୋଉ ପିଲାଟା
ଚାକିରୀ ନପାଇ ବଡ଼ ଲୋକଙ୍କ ପାଖକୁ ଦୌଡୁଥିଲା
ତାର କଣ ହେଲା ?

ଦ୍ୱିତୀୟ ଅଭିନେତା ।। ତାର କଣ ହେଲା ନହେଲା ସେଥିରେ
ଆମ ଯାଏ ଆସେ କେତେ ?

ପ୍ରଥମ ଅଭିନେତା ।। ରାସ୍ତାରେ ସୁଅ ଛୁଟିଚି ରକ୍ତର
ବାଘ ଡ଼େଉଁଛି
ଆଉ ଗୋଟେ ଅଦୃଶ୍ୟ ଖଣ୍ଡା ବୁଲୁଚି
ଖାଲି କାଟି ଦେଇ ଯାଉଚି ବେକ ଆଉ ବେକ୍ !
ସେଇଠି ସେ ଗାଁ ପିଲାଟା କଣ କରିବ ? ଦେଖ !

ତୃତୀୟ ଅଭିନେତା ।। ସେଇକଥା ତ ପଚାରୁଚି ଗୁରୁଦେବ ?
ଚାଲନ୍ତୁ ସିଏ କଣ କରୁଚି ଦେଖି ଆସିବା ।

ପ୍ରଥମ ଅଭିନେତା ।। ଠିକ୍ ଅଛି ।
ତମେମାନେ ଯେତେବେଳେ ଚାହୁଁଚ - ଚାଲ ।
(ସେମାନେ ଯିବାକୁ ବାହାରିଲା ବେଳେ
ସ୍ଥିର ହୋଇ ରହି ଯାଇଛଂତି
ଅଂଧାର ହେଲା,
ପୁଣି ସେଇ ଧର୍ମଘଟର ଅବସ୍ଥା
ସ୍ଲୋଗାନ, ଅଂଧାର- ଆଲୁଅ ଏବଂ କୋଳାହଳ
ବଂଧୁକ ଫୁଟିବା ଶବ୍ଦ, ପାଟିତୁଣ୍ଡ ।
ସବୁ ସ୍ଥିର ।
କ୍ରମଶଃ ଆଲୋକ ଆସିଲାବେଳକୁ ରାଜା
ଠିଆ ହେଉଚି ପ୍ଲାଟଫର୍ମ ଉପରେ ।
ସିଗାରେଟ ଲଗେଇବା ପାଇଁ ଦିଆସିଲି କାଠି
ମାରୁଚି ।
ଧଇଁ-ସଇଁ ହୋଇ ପ୍ରବେଶ କରିଚି ସଦାଶିବ)

ସଦାଶିବ ।। ଉଡ଼େଇ ଦେଇଚି ଦି'ଟା ବସ !

ରାଜା ।। ସରକାରୀ ନା ପ୍ରାଇଭେଟ ?

ସଦାଶିବ || ହେଉଥିବ ସରକାରୀ । ପୋଲିସ ଗୋଡ଼େଇଚି ।

ରାଜା || ଏଇଠିକି ଆସିଲୁ କାହିଁକି ?

ଲୁଚିଯା କୋଉଠି ।

ଏଇ କିଛିଦିନ ଷ୍ଟ୍ରାଇକ୍ ଚାଲିବ ।

ପିଲାମାନେ ଜାଣିନାହାନ୍ତି ଏଇଟା ବସ୍‌ବାଲାଙ୍କ ରାଜନୀତି

ବସ୍‌ବାଲା ଜାଣିନାହାନ୍ତି ଏଇଟା ରାଜନୀତିର ଖେଳ

ରାଜନୀତି ବାଲା ଜାଣିନାହାନ୍ତି ସୁଅ ଓଲଟା ବହିବ ।

ଲୋକେତ କିଛି ଜାଣିନାହାଂତି

ଖାଲି ମାଡି ଯାଇଛଂତି ।

ମାଡ଼ ଖାଇଛଂତି ବୋଲି ଉତ୍ୟକ୍ତ!

ଏଣେ ଶାନ୍ତି କମିଟି ବସିଚି । ଏଇଟା ହିଁ ମଉକା ।

ତୁ' ଲୁଚି ଯା' ସଦେଇ ।

କୋଉଠି ଆତ୍ମଗୋପନ କରି ରହିଯା -

(ସଦେଇ ଚାଲି ଯାଉଥିଲା)

ଆରେ ଭାଇ ! ହାତ ମିଳେଇ ଯା !

(ହାତ ମିଳେଇ) ସାବାସ୍ ଟୋ କା !

(ସଦାକୁ ଛାତିରେ ଲଗେଇଚି)

ଯା ସଦେଇ !

ଥରେ ନିଆଁ ସାଂଗରେ ଖେଳିବୁ ମାନେ ତୁ' ବଂଚିବା ଶିଖିଗଲୁ ।

ଏଇନେ ଖାଲି ଦୌଡ଼ିବା ଶିଖ୍ !

ମୁଁ ଚାଲିଲି । ବେଷ୍ଟ ଅଫ୍ ଲକ୍ !

(ରାଜା ଚାଲିଗଲା ।

ସଦା ଦୌଡ଼ିବା ଆରମ୍ଭ କରିଛି ।

ସେଇ ଗୋଟାଏ ଯାଗାରେ । ମନେହେବ ଯେମିତି ଏଣିକି

ସିଏ ଖାଲି ରାସ୍ତା ଉପରେ ଦୌଡୁଛି । ଧଇଁସଇଁ ହେଉ ।

ବଂଚିବା ପାଇଁ ସଂଗ୍ରାମ । ସମାଜର ସ୍ୱାର୍ଥପର ଶୋଷକ

ମାନଂକ ବିରୁଦ୍ଧରେ ସଂଗ୍ରାମ । ଆଲୋକ ତାରି ଉପରେ

କେନ୍ଦ୍ରୀଭୂତ । ଏମିତି ଦୌଡ଼ିବା ଅଭିନୟ କରିବା ଭିତରେ

ଶୁଭୁଛି ପ୍ରଚ୍ଛଦ ପଟରୁ)

ସ୍ୱର || ସଦାଶିବ ଦାସ !
ଗାଁ ଚାଟଶାଳୀର ସଦାଶିବ ।
ମାଇନର ପରୀକ୍ଷାରେ ବୃତ୍ତି ପାଇଥିବା ସଦାଶିବ ଦାସ ।
ଅଂକରେ ଶହେରୁ ନବେ
ସଂସ୍କୃତରେ ପଞ୍ଚାଅଶୀ
ବିଜ୍ଞାନରେ ଅଶୀ ।
ହେଡ୍ ମାଷ୍ଟର କହୁଥିଲେ ସଦାଶିବ ଗୋଟେ ଜୁଏଲ ।
ଇଂରେଜୀରେ ପ୍ରବଂଧ ଲେଖିଥିଲା "ମାଇଁ ଆମ୍ବିସନ ଇନ୍ ଲାଇଫ୍"
-ସମାଜ ସେବା କରିବ, ଗାଂଧୀ, ଗୋପବଂଧୁ, ବିନୋବା ତାର ଆଦର୍ଶ ।
ମିଶୁ ମୋର ଦେହ ଏ ଦେଶ ମାଟିରେ/ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ସଦାଶିବ ଦାସ ।
ତାର ବୋଉ ସେଦିନ ମରିଯାଇଥିଲା ଔଷଧ ନପାଇ ।
ବୁଢ଼ା ବାପାଟା ବନ୍ୟାରେ ଭାସିଯାଇ କୋଉଠି ଯେ ଲାଗିଲା ସଦାଶିବ ନିଜେ ବି ଜାଣି ପାରିଲା ନାହିଁ ।
ସହରର ସଦାଶିବ ଦାସ ।
ଚୋର, ଗୁଣ୍ଡା, ନକ୍ସାଲାଇଟ୍ ସଦାଶିବ ଦାସ ।
ଚିକିଣିଆ ତେଲମରା କଥା କହି ନିରୀହ ସରଳ ଲୋକଙ୍କୁ ଠକୁଥିବା
ସେଇ ଭଦ୍ର ଶୋଷକ ଗୁଡ଼ାକୁ ଦେଖିଲେ ଯିଏ ହଠାତ୍
ଅଂଧ ହେଇଯାଏ ଆଉ ଛୁରୀ ପେଲିଦେବାକୁ କହେ ସେଇ ସଦାଶିବ ଦାସ !
ପଛରେ ଯା'ର ଆଇନ୍ ଗୋଡ଼େଇଛି, ସେଇ ସଦାଶିବ ଦାସ ।
(ହଠାତ୍ ପୋଲିସ ଆସିଲେ ମଂଚ ଉପରକୁ ।
ସଦାଶିବ ଲୁଚିଗଲା । ସେମାନେ ଚାଲିଗଲେ । ଲୁଚି ଲୁଚି ଆସୁଥିବା ବେଳେ ପୋଲିସର ଗୁଳି ଫୁଟିଲା । ସଦାଶିବ

ତଳେ ପଡ଼ିଗଲା । ମଂଚଟା ସାରା ଧୂଆଁ । କ୍ରମେ ସେ ଉଠିବା ଦେଖାଗଲା । ମୁହଁରେ ଯଂତ୍ରଣାର ଛାପ । ହୁଏତ ଗୋଡ଼ରେ ମାଡ଼ ବାଜିଛି । ରକ୍ତର ଦାଗ ଦିଶୁଚି, ଆଣ୍ଠୁରେ, ମୁଣ୍ଡ ଫାଟି ଯାଇଚି । ଧାଇଁ ଧାଇଁ ଦମ୍ ପାଉନି । ଗୀତ ଶୁଭୁଚି :

ତମେ ଭଲବାଟ ପରା ଦେଖାଅ
ତମେ ଶୁଭବୁଦ୍ଧି ପରା ଶିଖାଅ
ମୋର କାମକୁ କରାଅ ସରସ
ମୋର ମୁଖେ ଦିଅ ଚିର ହରଷ ।''

(ଗୀତଟି କ୍ରମଶଃ କରୁଣତର ହୋଇ ଗୋଟାଏ ଚାପା କ୍ରନ୍ଦନର ଉଚ୍ଛ୍ୱାସ ଭିତରେ ତରଳି ଯିବ । ତା' ସାଥିରେ ସଦାଶିବ ଆଖିରୁ ଲୁହ ଓ କୋହ ଉଠି ବାକ୍‌ରୁଦ୍ଧ ହୋଇ ଯାଉଛି । ସଦାଶିବ ଜାଣେନା କାହିଁକି କାନ୍ଦୁଥିଲା । କିଂତୁ ସେ କାଂଦିବାର ସ୍ୱର ଅତି ବିକଳ)

ମଂଚ ପୁଣି ଅଂଧାର ହେଲା ।

ଏବଂ ଖୁବ୍ ଜୋର୍‌ରେ ଚାଲିଯାଉଥିବା ଗୋଟାଏ ଟ୍ରେନ୍‌ର ଶବ୍ଦ ସଦାଶିବର କ୍ରନ୍ଦନ ସ୍ୱରକୁ ପୋତି ପକେଇଲା । ଆସ୍ତେ ଆସ୍ତେ ମଂଚରେ ନୀଳ ଆଲୁଅ ପ୍ରବେଶ କରିବ । ରାତିର ଭ୍ରମ ସୃଷ୍ଟି କରିବା ପାଇଁ । ମଝିରେ ମଝିରେ ପୋଲିସ୍ ଗୁଳି ଶୁଭୁଥିଲା ।

ହଠାତ୍ ମଂଚ ସେ ପଟେ ପାଟି ଶୁଭିଲା, ସଦେଇ ସେପଟକୁ ଚାହିଁଲା ।

ପୋଲିସ୍ ।। ଏ ... ଏ... ଏ.. ବୁଢ଼ା ! ଯାଡ଼େ କୁଆଡ଼େ ବେ ? ଶଳା ବୋମା ପକେଇବୁ ? ଚାଲ ଶଳା ଥାନାକୁ ।

ବୁଢ଼ା ।। (ବୋଝଟିଏ ଧରି ମଂଚକୁ ପ୍ରବେଶ କରିଚି । ପୋଲିସ ତାକୁ କିନ୍ତୁ ଖୋଜୁଛି ଏ ସଂପର୍କରେ ସିଏ ସଚେତନ ନୁହେ ।)

ପୋଲିସ୍ ।। (ପ୍ରବେଶ କରିଚି । ପରେ ପରେ ଆଉଜଣେ) ଶଳା ମନା କଲେ ବି ମାଡ଼ି ଆସୁଚି । କୁଆଡ଼େ ଯାଉଚୁବେ ? ଶହେ ଚଉରାଳିସି ଜାରି ହେଇଚି ବୋଲି ଜାଣିନୁ ? (ପୋଲିସ ବୁଢ଼ାକୁ ନିସ୍ତୁକ ପ୍ରହାର କଲା । ବୁଢ଼ାଟି କିନ୍ତୁ

ବୁଝିବା ଆଗରୁ, କିଛି କହିବା ଆଗରୁ ପ୍ରଥମେ ଅବାକ୍ ହେଲା ଏବଂ ତାପରେ ବେହୋସ ହୋଇ ତଳେ ପଡ଼ିଗଲା । ପୋଲିସ ଦୁଇଜଣ ଚାଲିଗଲେ । ବୁଢ଼ାଟି ଉଠିବାକୁ ଚେଷ୍ଟା କଲା, ପାରିଲାନି, ପୁଣି ତଳେ ପଡ଼ିଗଲା । ଏସବୁ ମଂଚର ଅନ୍ୟ ଏକ କୋଣରେ ଥାଇ ଦେଖୁଥିଲା ସଦାଶିବ । ଆବହ ସଂଗୀତ କରୁଣ, ସମ୍ଭବତଃ କୋରାଲ ହମିଂ, ତାରି ଭିତରେ ସଦେଇ ଗଲା ବୁଢ଼ାଟି ପାଖକୁ ।)

ଆବହ ସଂଗୀତ ।। ତମେ ଭଲବାଟ ପରା ଦେଖାଅ
ତମେ ଶୁଭବୁଦ୍ଧି ପରା ଶିଖାଅ
ମୋର କାମକୁ କରାଅ ସରସ
ମୋର ମୁଖେ ଦିଅ ଚିର ହରଷ ...

ସଦେଇ ତାରି ଭିତରେ ପରୀକ୍ଷା କରି ଦେଖିଲା ବୁଢ଼ାଟା ବଂଚିଛି । ପରୀକ୍ଷା କରି ଦେଖିଲା ତାର ନିଶ୍ୱାସ ଚାଲିଛି । ଦୂରରୁ ଢ଼ଂ ଢ଼ଂ ହୋଇ ବାଜିଲା ରାତି ଦୁଇଟା । ମଂଚର ନୀଳ ଆଲୁଅ ସାଂଗରେ କିଛି ଧୂଆଁ ମିଶି କୁହୁଡ଼ିର ଆସ୍ତରଣଟିଏ ତିଆରି ହେଲା ।

ସଦାଶିବ ବୁଢ଼ାକୁ କାଂଧରେ ପକେଇଲା । ଉଠି ଠିଆ ହେଇ ଚାଲିଲା । ଆବହ ସଂଗୀତରେ ଗଭୀର ରାତ୍ରିର ସୂଚନା । ଅଂଧାର ।

ପୁଣିଥରେ ଆଲୁଅ ଆସିଲା ବେଳକୁ ସ୍ଥାନ, କାଳ ଓ ପାତ୍ର ମାନେ ବଦଳି ଯାଇଛଂତି । ସ୍ଥାନ, ଆପାତତଃ ରେଳ ଷ୍ଟେସନର ଗୋଟାଏ କୋଣ, ଗୋଟେ ରାଇଜର୍ ଉପରେ ବସିଚି ରାଜା । ମୁହଁରେ ଦାଢ଼ି । ହାତରେ ସିଗାରେଟ, ପାଖରେ ନକୁଳ ଠିଆ ହେଇଚି । ରାଜା ଘୃଣାରେ ମୁହଁ ବୁଲେଇଲା ଅନ୍ୟ ଆଡ଼କୁ ।

ନକୁଳ ।। ଇଏ ଗୋଟେ କଥା ବାବୁ ?
ଯେମିତି ହେଲେ ଯିବେନା !

ରାଜା ।। ଚୋପ୍ ବେ ଶଳା ତମ ବସ୍‌ବାଲାଙ୍କ କଥାରେ ପଡ଼ି ମୁଁ ନିଆଁକୁ ଡ଼େଇଁବି ?
କେତେ ଟଂକା ଦବ ?

ନକୁଳ || ପାଁ ସାତ ହଜାର ଭିତରେ ଦେବେ ସାର୍ !
ରାଜା || କଣ କହିଲୁ ? ଶଳା ପାଞ୍ଚ ସାତ ହଜାର ଦବ ବୋଲି
ମୁଁ ପାଞ୍ଚୋଟି ସରକାରୀ ବସ ପୋଡ଼ିବି ?
ନକୁଳ || ଖାଲି ସରକାରୀ ବସ ନୁହେଁ ସାର୍ !
ଆମର ବି ଦି ଚାରିଟା
ପୁରୁଣା ପୁରୁଣି ଦେଖି ପୋଡ଼ି ଦେବେ !
ରାଜା || ଆଉ ତମେ ସେଥିରୁ ଲକ୍ଷ ଲକ୍ଷ ଟଂକା
ଇନ୍ସୁରାନ୍ସ ପାଇବ ?
ନକୁଳ || ଆପଣ ଠିକ୍ କହୁଛଂତି ରାଜା ବାବୁ ।
ବସବାଲା ଦେଶଟାକୁ ଖାଇଗଲେ ।
ଦେଖୁନାହାଂତି ! ବସ ଚଳେଇ ପରା କେତେଟା
ମଂତ୍ରୀ ହେଇଗଲେଣି ୟାରି ଭିତରେ
ରାଜା || ତୁ ଶଳା ସେଥିପାଇଁ ତ ତାଂକ ପାଖରେ
ଚାମଚା ଗିରି କରୁଚୁ ! ନା ତୁ ବି ଗୋଟେ ଅଧେ
ବସ୍‌ର ମାଲିକ ହେଇଗଲୁଣି ?
ନକୁଳ || ନାଇଁମ ରାଜାବାବୁ । ବସ ଧନ୍ଦାରେ ପଶିବା ପାଇଁ
ମୋ' ପାଖରେ ପଇସା କାଇଁ ?
ମତେ କହିଲେ ଗୋଟେ ଧୁମଧଡ଼ାକା ଷ୍ଟ୍ରାଇକ୍ ହବ
ମୋ ଦାୟିତ୍ୱ ହେଲା ଦଶହଜାର ଖଣ୍ଡେ ଲୋକ ଯୋଗାଡ଼ ।
ରାଜା || ଶଳା ଲୋକ ଯୋଗାଡ଼ କରି ଷ୍ଟ୍ରାଇକ୍ କରେଇବେ ଆଉ ନିଜେ
ନିଜର ଧଂଦା କରିବେ !
ନକୁଳ || ସେଇଠି ତ ବାହାଦୁରୀ ରାଜାବାବୁ !
ମୁଁ ବି ଦେଖିଲି ଓଡ଼ିଶା ସାରା ମରୁଡ଼ି ।
ଲୋକମାନେ ଗାଁ ଛାଡ଼ି ବମ୍ବେଇ ସୁରତ ଯିବାକୁ ତିଆର ।
ସମସ୍ତଙ୍କୁ ଅଟକେଇ ଦେଲି । ରୁହ ।
ମାସେ ପର୍ଯ୍ୟନ୍ତ ଖାଇବା ପିଇବା ଫ୍ରି ।
ମାଗଣାରେ ସହର ବୁଲିବ ।
ତା' ଉପରେ ଦିନକୁ ପଚିଶ ଟଙ୍କା ମଜୁରୀ ଅଛି ।
ଜଳା ପତାକା ଧରି ସ୍ଲୋଗାନ ଦବା ଛଡ଼ା ଆଉ କିଛି କାମ

ନାଇଁ ।
ସେଇଥିରେ ପୁଣି ସାର୍ ସରକାର ତାଂକ କଥା ମାନିଗଲା ଯେ ଦଶଦିନ ଆଗରୁ ଷ୍ଟ୍ରାଇକ୍ ଖଲାସ !
ବଳକା ଦଶଦିନର ଫୁଲ୍ ପଇସା ଆଜ୍ଞା ବସ୍‌ବାଲା ଦେଲେ ନାଇଁ । ଦି ଟଙ୍କା ଲେଖା କାଟିଦେଲେ ଯେ ଲୋକେ ଶେଷକୁ ମୋ' ବେକରେ ଗାମୁଛା ପକେଇଲେ ! ଏଥିରେ କି ବେପାର କରିବ କହୁନାହାଂତି ?

ରାଜା ।। ଦରକାର ନାଇଁ ଶଳା । ଏ ଷ୍ଟ୍ରାଇକ୍ ଫାଇକ୍ କିଛି ହେଇ ପାରିବ ନାଇଁ ।
ଶାଲା ହମ୍ ଅପନେ ଧନ୍ଦେ ମେଁ
ରହନେ ୱାଲେ ହେଁ !
ଧଂଦା ଖୁବ୍ ଆଚ୍ଛା ଚଲ୍‌ତା ହୈ ।
ବେକାର୍‌କା ଲଫଡ଼ା ନହିଁ ଚାହିୟେ
ବୋଲ୍‌ଦୋ ! ରାଜା କୋ ବୁକ୍ କର୍‌ନେସେ ପହଲେ
ଅପନା ସଲାମୀ ଚାହିୟେ ।
ଆଉ ମୋ' ଦାୟିତ୍ୱ ?

ନକୁଳ ।। ସେଇଟାତ କହିଲି ରାଜା ବାବୁ ! ହେଲେ ଆଉ ପଦେ କହିବାକୁ ଯଦି ଅନୁମତି ଦେବେ .. !

ରାଜା ।। କଣ କହିବୁ ବେ ?

ନକୁଳ ।। ସରକାରୀ ବସ ସାଂଗରେ ଆଉ ଦିଇଟା ପୁରୁଣା ବସ୍ ଆମର ଯେମିତି ପୋଡ଼ାହୁଏ ।

ରାଜା ।। ଯା! ଦଶ ହଜାର ବଣ୍ଡିଲଟିଏ ନେଇକି ଆ' ।
ତା'ପରେ କଥାବାର୍ତ୍ତା । ଆଉ ଶୁଣ ! ସେମିତି ଯିବିନି !

ନକୁଳ ।। ଆଉ ?

ରାଜା ।। ଗାଡ଼ି ପଠେଇ ଡ଼କେଇନବ ।
ମାଲ୍ ପାଣି ଚୋଷ୍ଟ ପିଇ ସେଇଠି
ମିଟିଙ୍ଗ ହବ ।
ତା' ଗ୍ୟାରେଜ୍ ଭିତରେ ।

ନକୁଳ ।। ଇଏ ଗୋଟେ କଥା ବାବୁ ? ଆଜ୍ଞା ସାର୍ ଆପଣ କହିବେ ପୁଣି ହବନି ?

ରାଜା ।। ଆବେ ସାତଟା କଲେଜର ପେସିଡେଣ୍ଟ
ମୋ ହାତରେ ।
ଯାହା କହିଲେ ତାହା ଶୁଣିବେ ।
ନହେଲେ ଥୋମଣି ଫଟେଇଦେବି ।
ମୋର କିଂତୁ ରୋକ୍‌ଡ଼ା
ଦରକାର । ଫୁଲ୍ ଦଶ ହଜାର ।

ନକୁଳ ।। ଆଜ୍ଞା ସାର୍ । ଆପଣ ଯାହା କହିବେ
ଅଲବତ ହବ ଆଜ୍ଞା ସାର୍ !

ରାଜା ।। ତା' ହେଲେ ଫୁଟ୍ ! ଫୁଟ୍ ଏଇଠୁ !
(ନକୁଳ ଚାଲି ଯାଉଥିଲା । ପୁଣି ପଛରୁ ଫେରି ଆସିଲା ମୁଣ୍ଡ କୁଣ୍ଡେଇ କୁଣ୍ଡେଇ)

ନକୁଳ ।। କିଂତୁ ବାବୁ ... ଏଇଲେ ତ ସାତଥର
ଖୋଜି ଖୋଜି ଆଜି ତମକୁ ପାଇଲି
ଇଟେସନରେ । ଏମିତି ଖୋଜିଲେ
କାମ କେମିତି ହବ ?

ରାଜା ।। କାମ ଠିକ୍ ହବବେ ଟାଉଟର ।
ୟେ ମରଦ୍ କା ବାତ ହୈ ।

ନକୁଳ ।। ତା' ହେଲେ ଆଜ୍ଞା ସାର୍ ... ।
କାଲି କୋଉଠି ପାଇବି
ଆପଣଂକୁ ?

ରାଜା ।। ରାତି ଦଶଟା ବେଳେ ଭାଟିରେ ।

ନକୁଳ ।। କୋଉ ଭାଟି ଆଜ୍ଞା ?

ରାଜା ।। ଏଇ ଷ୍ଟେସନ ପଛପଟ ବସ୍ତିବେ ! ତାର ଦୁଇ ନଂବର ଭାଟିରେ । ସେଇଠି ବସିଥିବି । ପଚାରି ପଚାରି ଆସିବୁ । ଦେଖିବୁ ଭାଟି ?

ନକୁଳ ।। (ହସି) ଆଜ୍ଞା, ସାର୍ !

ରାଜା ।। ଜିପ୍ ନେଇ ପହଂଚିବୁ । ନହେଲେ ମୁଁ ଯିବିନି ! ହଁ, ସାଂଗରେ ସେ ପଞ୍ଚାନନକୁ ନେଇ କି ଆସିବୁ । ଦେଖିବୁ ଯେମିତି ନିଜେ ଆସି ଡାକେ !

ନହେଲେ ଶେଷକୁ ସେଇଟା ଶଳା ଗୋଳମାଲ୍ କରିବ ।
ପଇସା ହେଇଗଲେ ଶଳାଙ୍କର ଆଖି ଉପରକୁ ହେଇଯାଉଛି ।
ପରେଯଦି ରୋକ୍‌ଡ଼ା ଦବାରେ ଏପଟ ସେପଟ କରେ ଶଳାକୁ
ବସ୍ ସାଂଗରେ ପୋଡ଼ିଦେବି ।

ନକୁଳ ।। ଆଜ୍ଞା, ସାର୍ ?

ରାଜା ।। ଆରେ ଆମ କାମରେ ଖିଲାପ ନାଇଁ ମ' ମଣି !
କାମ ଯେମିତି ଗରମା ଗରମ୍; ରୋକ୍‌ଡ଼ାବି
ସେମିତି ଗରମା ଗରମ୍ ମିଳିବା ଦରକାର ।

ନକୁଳ ।। ରୋକ୍‌ଡ଼ାଟା ଗରମା ଗରମ୍
ମିଳିଯିବ ଯେ ଆଜ୍ଞା ସାର୍,
ହେଲେ (ଦାନ୍ତ ନେଫେଡ଼ି) ମୋ'
କମିଶନ୍‌ଟା ...

ରାଜା ।। କଣ କହିଲୁ ବେ ବାସ୍‌ଟାଡ଼ ?
(ରାଜାର ଆଖି ଦିଇଟା ଦପ୍ ଦପ୍ ହେଇ ଜଳୁଥିଲା
ମଣିଷଖିଆ ବାଘ ପରି ।)

ନକୁଳ ।। ଆଜ୍ଞା, ସାର୍ ! ମୋ ଉପରେ ମିଛଟାରେ ଏମିତି ରାଗୁଛଂତି !

ରାଜା ।। ଶାଲା ! ତତେ କମିଶନ ଦେଇ ମୁଁ ଏଇଠି ଧଂଦା କରୁଚି
ବେ ? ତୋ' ଭଳିଆ ଦଲାଲ୍ ଆଉ ପଲିଟିସିଆନ୍ ପଞ୍ଚାନନକୁ
... ସେ ଶଳା ଦି'ପଇସାର ଧୋତିବାଲାକୁ ମୁଁ ଡ଼ରିଚି ?
ଆମର ଇଲେକ୍‌ସନ୍ ବେ ! ଖୋଦ୍ ମିନିଷ୍ଟର କହିଛି । ତା'
ପାଇଁ ଦି'ଟା ହ୍ୟାଟ୍ରିକ୍ କରିଦେଲେ ଲାଖ ରୁପେୟା କମାଇ !
ସେ ପଞ୍ଚୁଦାସ ମୋଟର ବାଲାକୁ କିଏ
ଖାତିର କରିଛି ବେ ?

ନକୁଳ ।। ମୁଁ ଗରିବ ଲୋକ ଆଜ୍ଞା ସାରେ !
ମଦ ଭାଟିରେ ବାକି
ପାନ ଦୋକାନରେ ବାକି
କଂଟ୍ରୋଲ ଦୋକାନରେ ବାକି !
ମୋ' ପିଲାଛୁଆ ମରିଯିବେ ସାର୍ !
କିନ୍ତୁ ହେଲେ ଟଂକା ଦି' ହଜାର ମିଳୁ !

ମୁଁ ସବୁ ଧଂଦା ଛାଡ଼ି ଦେଶ ସେବାରେ
ଜୀବନ ଉତ୍ସର୍ଗ କରି ଦେଇଛି ।

ରାଜା ।। ପିଲାଛୁଆ ଦେଶରେ ଅନେକ ମରୁଛଂତି । ଖାଇବାକୁ ନପାଇ ମରୁଛଂତି । ହୋଟେଲରେ ବାସନମାଜି ବଂଚୁଛନ୍ତି ! ଡାକ୍ତରକୁ ପଇସା ଦେଇ ନପାରି ମରୁଛଂତି । ପୋଲିସ୍ ଗୁଳିରେ ମରୁଛଂତି । ଟ୍ରେନ୍‌ତଳେ ଚାପି ହେଇ ମରୁଛଂତି । ମୋର ସେଇଥିରୁ କଣଗଲା ? ମୁଁ ବଂଚିବାକୁ ଚାହେଁ ନକୁଳ ଜେନା ! ପନ୍ଦର ବର୍ଷ ତଳେ ମୁଁ ହୋଟେଲ ପାଖ ମଇଳା ଗଦାରୁ ଯେତେବେଳେ ଅଇଁଠା ସାଉଁଟୁଥିଲି ।
ମତେ ଫୋପାଡ଼ି ଦେଇଥିଲା ପୋଲିସ୍ !
ଜାଣିଚୁ ନକୁଳ ଜେନା ?
ପଚାନଳା ପାଖରେ ଶୋଇ ଶୀତରାତି କଟେଇଚି ।
ଟ୍ରକ୍ ମାଡ଼ି ଯାଇନି ।
ରାସ୍ତାକଡ଼ର ବୁଲା କୁକୁର ସାଂଗରେ ଝଗଡ଼ା କରି
ଅଇଁଠା ଖାଇଚି, ନକୁଳ ଜେନା ।
ହେଲେ ରାଜା ବଂଚିଛି ।
ଆଜିବି ବଂଚିଛି ।
ବଂଚିଛି ସେନାପତି ପରି,
ଏ ବାସ୍‌ଟାର୍ଡ୍ ନେତା ମାନଂକୁ ଛୁରୀ ଦେଖେଇ ବଂଚିଛି ।
ବଂଚିବା ଶିଖିଛି ହା ତବୋମା ଫୁଟେଇ ।
ଅନେକ ଦିନ ପରେ ବୁଝିଛି
ମୋ'ଭଳି ତମେ ବଂଚିବା ପାଇଁ
ଶହେ ଲୋକକୁ ମାରିଲେ କ୍ଷତି ନାଇଁ
ପଞ୍ଝାଦାସ ଭଳିଆ ନେତାମାନେ
ଶଳା ମତେ ଏ ବ୍ରହ୍ମଜ୍ଞାନ ଦେଇଛଂତି ।

ନକୁଳ ।। ବହୁତ ହେଇଗଲା ଆଜ୍ଞା ସାରେ
ଦି ହଜାରେ ନହେଲେ ବି
ମିଳିଯାଉ ହଜାରେ ... !

ରାଜା ।। କିଛି ନାଇଁ । ନୂଆ ପଇସାଟେ ବି ନୁହେ ।
ତୁ' ଶଳା ଷ୍ଟ୍ରାଇକ୍ କରିବା ପାଇଁ

ଲୋକ ଯୋଗାଡ଼ କରି
କମିଶନ ପାଉଛୁ ।
ତୋର ଠିକ୍ ଚାଲିଛି ।

ନକୁଳ ।। ହଜାରେ ନହଉ ଆଜ୍ଞା ସାରେ !
ପାଁଶ ମିଳୁ ।

ରାଜା ।। କାହିଁକି ? ମୁଁ ଯେତେବେଳେ
ଖାଇବାକୁ ନପାଇ ରାସ୍ତା କଡ଼ରେ
ପଡ଼ିଥିଲି ?
ମୋ' ଖବର କିଏ ବୁଝୁଥିଲା ବେ ?
କାଲି ସକାଳୁ ବଂଧା ହେଇଗଲେ
ବେଲ୍‌ରେ ଆଣିବା ପାଇଁ କେହିନାହିଁ ।
ପକେଟରେ ସେଇଥି ପାଇଁ
ହ୍ୟାଣ୍ଡ ଗ୍ରେନେଡ୍ ନେଇ ବୁଲୁଚି ।
ଗୋଟେ ଫୁଟିଲେ ହାଡ଼ ଟୁକୁରା
ମିଳିବ ନାଇଁ ।

ନକୁଳ ।। ପାଁଶ ନ ମିଳିଲେ
ଶହେ ଟଂକା ହେଲେ
ମିଳୁ!

ରାଜା ।। ଭାଗ୍ ! ଭାଗ୍ ଶଲା ଏଇଠୁ !
ବାପ୍ କା ମାଲ୍ ?
ଶହେ ଟଂକା କାଇଁକି ଦେବି ବେ ?

ନକୁଳ ।। ହଉ ଆଜ୍ଞା ସାରେ
ନଦେଲେ ନାଇଁ ।
ବିଡ଼ି ଖଣ୍ଡେ ମିଳୁ ।

ରାଜା ।। (ହସିକି ବିଡ଼ି ଦେଇଚି)

ନକୁଳ ।। (ବିଡ଼ି ନେଇ) ଯାଉଛି ଆଜ୍ଞା ସାରେ !
ଗରୀବ ଉପରେ ଦୟା ଥାଉ ଆପଣଙ୍କର !
(ନକୁଳ ଜେନା ମଂଚର ବାଁପଟେ ଚାଲିଗଲା ଏବଂ
ଡାହାଣପଟକୁ ଗଲା ରାଜା ବ୍ୟଂଗାତ୍ମକ ଆଖିରେ ନକୁଳକୁ

ଚାହିଁ ଚାହିଁ । ମଂଚର ଆଲୋକ ନିର୍ବାପିତ ହେଲା । ଯେତିକି ଅସ୍ପଷ୍ଟ ଛାୟାଲୋକ ପଡୁଥିଲା ତାରି ଭିତରେ କେହି ଦେଖିବାକୁ ଚାହିଁବେ ତା' ହେଲେ ଦେଖିବେ ସଦାଶିବ ଜଣେ ବୃଦ୍ଧର ଅର୍ଦ୍ଧମୃତ/ଅଜ୍ଞାନ ଶରୀରକୁ କାଂଧରେ ପକାଇ ଆସୁଚି । କାରଣ ବିସ୍ଫୋରଣ, ବୋମା ଓ ଜଳାପୋଡ଼ାର ନିଆଁ ପଛପଟ ସାଇକ୍ଲୋରୋମାରେ ଏବଂ ସଦାଶିବ ବୁଢ଼ାକୁ କାଂଧରେ ବୋହି ଆଣିବା ଦୃଶ୍ୟଟି ପୂରା ସିଲହୁଟ୍‌ରେ ଦେଖାଇ ଦିଆଯିବ । କ୍ରମେ କ୍ରମେ ଡ଼ିମରରେ ଆଲୋକ ଆସିବ । ଈଷତ୍ କମଳା ବା ଲାଲ ରଙ୍ଗ । ସଂପୂର୍ଣ୍ଣ ଲାଲ ନଦେଇ ହଳଦିଆ ଓ ସବୁଜ ରଂଗକୁ ମିଶାଇ ପାଖାପାଖି ସିଂଦୂର ରଂଗ ଭଳି ଦିଶୁଥିବା ନୂତନ ଲାଲ୍ ରଂଗଟି ତିଆରି କରି ପ୍ରୟୋଗ କରାଯିବା ଉଚିତ । ବାଟରେ ଦେଖାହେବେ ଦ୍ୱିତୀୟ ଓ ତୃତୀୟ ଅଭିନେତା । ସେମାନେ ବର୍ତ୍ତମାନ ପାଇଁ କୌଣସି ଏକ ଅନିର୍ଦ୍ଦିଷ୍ଟ ସହରର ଅନିର୍ଦ୍ଦିଷ୍ଟ ଉପଗଳିର ଲୋକ । ପାଖରେ କୌଣସି କାମ ନାହିଁ । ତେଣୁ ସହରରେ ଚାଲିଥିବା ଷ୍ଟ୍ରାଇକ୍ ସଂପର୍କରେ ନିଜସ୍ୱ ବିବରଣୀ ଦେଉଦେଉ ବି ସତ ଅପେକ୍ଷା ମିଛ ବାହାଦୂରୀ ବେଶୀ ଭାଗ ଜଣାପଡୁଥିଲା)

ତୃତୀୟ ଅଭିନେତା ।। ଗୋଟେ ଟେକା ମାରିଚି, ଶଳା ପୋଲିସର ଚୁଳ ଉଡ଼ିଗଲା ।

ଦ୍ୱିତୀୟ ଅଭିନେତା ।। ସାଂଗ, ମୁଁ ବି ଗୋଟେ ମାରିଚି ।

ତୃତୀୟ ଅଭିନେତା ।। କଣ ହେଲା ?

ଦ୍ୱିତୀୟ ଅଭିନେତା ।। ପୋଲିସର ବଂଦୁକଟା ଉଡ଼ିଗଲା ।

ତୃତୀୟ ଅଭିନେତା ।। ସେଇଠୁ ନିହାଲ ହେଇଗଲା । ଶଳା ଗୋଟେ ବୟଜ୍ ହାଇସ୍କୁଲ ଟୋକା ଅଛି । ବାର ଚଉଦ ବର୍ଷ ବୟସ ହେବ । ଏପଟୁ ଭାଇ ଲୋକ ମାଡ଼ି ଚାଲିଛନ୍ତି - ସେପଟୁ ପୋଲିସ୍ ମାଡ଼ି ଆସୁଥାଆନ୍ତି । ଟୋକାଟା ଠିଆ ହୋଇଥାଏ ଗୋଟାଏ କୋଣରେ ।

ଦ୍ୱିତୀୟ ଅଭିନେତା ।। ସେଇଠୁ ?

ତୃତୀୟ ଅଭିନେତା ।। ମାଉଲା ଗୋଟେ ଟେକା ଯେ ପୋଲିସର ଟିପ୍‌ଟା ଉଡ଼ିଗଲା ।

ଦ୍ୱିତୀୟ ଅଭିନେତା ।। ଶଳା ଗୁଲି ମାରୁଚୁ ! ଟେକା ମାଡ଼ରେ ଏମିତି ଟିପ୍‌ଟା ଉଡ଼ିଗଲା ?

ତୃତୀୟ ଅଭିନେତା ।। ଆଉ ତୁ' କେମିତି ଚେକା ମାରି ବଂଦୁକଟା ଉଡ଼େଇ ଦେଲୁ ?

ଦ୍ୱିତୀୟ ଅଭିନେତା ।। ନ ଉଡ଼େଇଲେ ନାହିଁ ଯା' !

ତୃତୀୟ ଅଭିନେତା ।। ତା' ହେଲେ ଭାବିନେ' ଛିପ୍‌ଟା ଅଛି ।

(ସଦାଶିବ ଅଚେତ ବୁଢ଼ାଟିକୁ ନେଇ ପ୍ରବେଶ କରି ପଚାରିଛି)

ସଦାଶିବ ।। ବାବୁ, ଏ ବୁଢ଼ାଟା ତମ ପଡ଼ାର ?

ତୃତୀୟ ଅଭିନେତା ।। (ପରୀକ୍ଷା କରି) ଆରେ ହେ ! ଏଇଟା କାଳୁ ସାମଲଟାବେ !

ଦ୍ୱିତୀୟ ଅଭିନେତା ।। କିଏ ? ସେଇ କଂଥା ବିକାଳି କାଳୁ ? ଏଇଟାକୁ କିଏ ଏମିତି ମାଉଲା କିହୋ ବାବୁ ?

ସଦାଶିବ ।। ପୋଲିସ୍ !

ଦ୍ୱିତୀୟ ଅଭିନେତା ।। ଶଳା ଷ୍ଟ୍ରାଇକ୍ ଚାଲିଲାବେଳେ କାହିଁକି ଯାଇଥିଲା କି ବାହାରକୁ ?

ତୃତୀୟ ଅଭିନେତା ।। ତୁ' ଯାହା କହ ଭାଇ ! ତୁଚ୍ଛାଟାରେ ନିନ୍ଦିଲେ କେମିତି ହବ ? ଗରୀବ ଲୋକ, ତା' ପେଟ ପାଟଣା ନେଇ ସିଏ ଯାଇଥିଲା ବାହାରକୁ ।

ସଦାଶିବ ।। ୟା ଘରଟା ଟିକିଏ ଦେଖେଇ ଦେଇ ପାରିବେ ?

ଦ୍ୱିତୀୟ ଅଭିନେତା ।। ତୁ' ଯା', ଦେଖେଇ ଦବୁ !

ତୃତୀୟ ଅଭିନେତା ।। ତୁ' ଯାଉନୁ ? ନେଡ ମାଉସୀକୁ ମତେ ଭାରୀ ଡ଼ର ।

ଦ୍ୱିତୀୟ ଅଭିନେତା ।। ତୁ' ଶଳା ତା ଝିଅ ଉପରେ ଆଖି ପକେଇଥିବୁ ।

ସଦାଶିବ ।। ଭାଇ ଟିକିଏ ଚାଲ, ତା' ଘରଟା ଦେଖେଇଦବ । ବୁଢ଼ାଟା ବଡ଼ କଷ୍ଟ ପାଉଲାଣି ।

(୨ୟ ଓ ୩ୟ ଅଭିନେତା ଗୋଟିଏ କୋଣକୁ ଯାଇ)

ଦ୍ୱିତୀୟ ଅଭିନେତା ।। ନେଡ ମାଉସୀ !(ଡ଼ାକିଲେ)

ତୃତୀୟ ଅଭିନେତା ।। ନେଡ ମାଉସୀ ! (ଡ଼ାକିଲେ)

ଦ୍ୱିତୀୟ ଅଭିନେତା ।। ମାଉସୀ କବାଟ ଖୋଲ ! (କାନେଇ) କିଏ କଣ ଶୁଣୁନାହାନ୍ତି କିରେ !

ତୃତୀୟ ଅଭିନେତା ।। ହଇଲୋ ଗଉାରୀ ! ଗଉରୀ !

ଦ୍ୱିତୀୟ ଅଭିନେତା ।। ଚୁପ୍ ବେ !

ତୃତୀୟ ଅଭିନେତା ।। ଗଉରୀ ! ଗଉରୀ ଲୋ' !

ନେତ ।। (ଭିତରୁ) କିଏ କିରେ ବାଡ଼ିପଡ଼ା ! କେତେ ସରାଗରେ କଣ ଡ଼ାକିଲୁଣି ! କିଏତୁ ?

ତୃତୀୟ ଅଭିନେତା ।। (ଭଦ୍ରଲୋକ ଭଳି) ମାଉସୀ ମୁଁ ! ବୁଢ଼ା ମଉସାଙ୍କର ମୁଣ୍ଡ ଫାଟି ଯାଇଚି - ଦୌଡ଼ି ଆସ ।

ନେତ ।। (ପ୍ରବେଶ କରି) କଣ ହେଲା ? କଣ ହେଲା ମୋ' ବୁଢ଼ାର ? ଏ ବାଡ଼ିପଡ଼ାଟା କିଏ ?

ସଦାଶିବ. ।। ମୁଁ ବାଡ଼ିପଡ଼ା ନୁହେ, ସଦେଇ, ସଦାଶିବ !

ନେତ ।। ଏଁ !

ସଦାଶିବ ।। ଦେଖ ସାଉସୀ ! ତମ ବୁଢ଼ା କେମିତି ପୋଲିସର ମାଡ଼ରେ ...

ନେତ ।। ଏଁ, ପୋଲିସ୍ ? ପୋଲିସ କାଇଁକି ମାଇଲା ?

ସଦାଶିବ ।। ମୁଁ ଜାଣିନି ମାଉସୀ ! ଚାରିଆଡ଼େ ଷ୍ଟ୍ରାଇକ୍ ଚାଲିଛି । ଏମିତି ଅବସ୍ଥାରେ ବୁଢ଼ାକୁ ଛାଡ଼ିବା ଉଚିତ ନଥିଲା । (ସଦାଶିବ କାଳୁ ସାମଲକୁ ତଳେ ରଖିଦେଲା । ତା' ଦେହ ଗୋଟାଏ ପଟକୁ ଢ଼ଳି ପଡ଼ିଲା । ନେତ ମନରେ ଅନେକ ଆଶଂକା । ହଠାତ୍ ବୁଢ଼ୀ ବିକଳ ହେଇ ଫାଟି ପଡ଼ିଲା)

ନେତ ।। ଆରେ ଯେ ବାଡ଼ିପଡ଼ା ପୋଲିସ ... ତମକୁ ମରଣ ହଉ ନିରେ ପୁଲିସ ବାଡ଼ିପଡ଼ା ... ମୋ' ବୁଢ଼ାଟାକୁ ଏମିତି ଅସକତିଆ କରି ବାଡ଼େଇ ବାଡ଼େଇ ମାରିଦେଲ ? ତମ ହାତକୁ କୋଷ୍ଟ ହେଇଯିବରେ ବାଡ଼ିପଡ଼ା !(କାଂଦିଲା) ମୋ' ବୁଢ଼ାଟା ତମର କି ଦୋଷ କରିଥିଲାରେ ବାଡ଼ିପଡ଼ା !

ଦ୍ୱିତୀୟ ଅଭିନେତା ।। ଛାଡ଼ ମାଉସୀ ! ଆଜି ଭଳିଆ ବିପଦ ଦିନରେ ବୁଢ଼ାଟାକୁ ପଠେଇଥିଲ କଂଥା ବିକିବାକୁ ? ଏୟା ହବନିତ ଆଉ କଣ ହବ ?

ନେତ ।। କଣ କହିଲୁ ବାଡ଼ିପଡ଼ା ! ମୋ' ଦୁଃଖରେ ମୁଁ ଅଛି । ବୋଝ ନ ବୋହିଲେ ଚୁଲି ଲାଗିବନି ମୋ' ଘରେ ...

ଓହୋ .... ହେ ଭଗବାନ ! ମୁଁ କାହାରି କିଛି ଅନ୍ୟାୟ କରିନି ହେ ଜଗନ୍ନାଥେ ... ମୋ' ଗେରସ୍ତକୁ ଯିଏ ଆଜି ଏତେ ସରି କରିଛି, ତା' ହାତ ଗୋଡ଼ ପୋଡ଼ିଯାଉ ଜଗନ୍ନାଥେ - ତା' ପିଲା ମାଇପ ରାଣ୍ଡ ହେଇଯା'ନ୍ତୁ ।

ତୃତୀୟ ଅଭିନେତା ।। ଆହେ ଆଗ ବୁଢ଼ାଟାକୁ ଘରକୁ ନିଅହେ ! ବାବୁଟା ତାକୁ କାଂଧରେ ପକେଇ ଏତେ ବାଟ ଆସିଚି ...

ସଦାଶିବ ।। ଆସ ମାଉସୀ ... ଧର ... ଭିତରକୁ ନେଇଯିବା ।
(ନେତ ଓ ସଦାଶିବ ମିଶି ବୁଢ଼ାକୁ ଘରକୁ ନେଇଗଲେ । ନେଉ ନେଉ ନେତ କହୁଚି)

ନେତ ।। ମରି ଯାଉନୁରେ ବାଡ଼ିପଡ଼ା ପୁଲିସ ... ମଟର ପୋଡ଼ିଲା କିଏ । ମାଡ଼ ଖାଇଲା କିଏ ..? ତୋର କଣ ପିଲା ମାଇପ ନାହାନ୍ତି କିରେ ପୋଲିସ । ଆଲୋ ଗଉରୀ ... ଆଲୋ ଏପଟେ ଟିକିଏ ଧରିବୁ ଆ'! ଓଃ ।
(ସେମାନେ ବୁଢ଼ାକୁ ଆଣି ମଂଚ ଉପରେ ଥୋଇଲେ)
ଆରେ ସେଇଠିନୁହରେ ଭିତରକୁ ନେଇଯାଅ ।
(ସେମାନେ ବୁଢ଼ାକୁ ଆରପଟ Wing ଆଡ଼େ ନେଇଗଲେ । ବର୍ତ୍ତମାନ ମଂଚ ଉପରେ ୧ମ ଓ ୨ୟ ଅଭିନେତା । ସଦାଶିବ ଓ ଅନ୍ୟମାନେ ଭିତରେ)

ପ୍ରଥମ ଅଭିନେତା ।। ଯାଃ ! ଗଉରୀଟାର ଦେଖା ମିଳିଲା ନାହିଁ । ଉଁଃ !

ଦ୍ୱିତୀୟ ଅଭିନେତା ।। ଗଲୁନି ଭିତରକୁ ?

ପ୍ରଥମ ଅଭିନେତା ।। ଏଇଲେ ସମସ୍ତଙ୍କର ମନ ଭଲ ଥିବ ନା ... ସୁବିଧା ହବନି ।

ଦ୍ୱିତୀୟ ଅଭିନେତା ।। ତା'ହେଲେ ଆମେ ଏଇଠି ଠିଆ ହବା ନା ବାହାରକୁ ଯିବା ?

ପ୍ରଥମ ଅଭିନେତା ।। ଏମାନେ କଣ ଏତେ ସମୟ ଭିତରେ ରହିଗଲେ ! ସେ ସଦେଇଟାବି ଭିତରେ !

ଦ୍ୱିତୀୟ ଅଭିନେତା ।। ପଟି ବାଂଧୁଥିବ !

ପ୍ରଥମ ଅଭିନେତା ।। ପଟି ବାଂଧୁଥିବ, ତା'ପରେ ଗଉରୀ କି କହିଥିବ- ତୁ ଟିକିଏ ଧରେ ... ଗଉରୀ ଆସି ପାଖରେ ବସିଥିବ । ପଟି

ବାନ୍ଧୁ ବାନ୍ଧୁ ଯା ଧୂଅ ତା' ଧୂଅରେ ବାଜି ଯାଉଥିବ ...
ଏଗୁଡ଼ା କଣ' ଭଲ କଥା ହେଲା !

ଦ୍ୱିତୀୟ ଅଭିନେତା ।। ଯା କହ ଭାଇ - କୋଉ ଏରିଆର ଲୋକ ... ଶଳା ଘର ଭିତରେ ପଶି ଏତେ ସମୟ ରହିବା କଣ ଠିକ୍ ହେଲା ? ଯେତେହେଲେ ଏଇଟା ଆମ ସାହିଟି ।

ପ୍ରଥମ ଅଭିନେତା ।। ମୁଁ କିଂତୁ କହିଦଉଛି ଭାଇ ! ସତରେ ଯଦି ସିଏ ଗଉରୀ ସାଂଗରେ ଲୁତୁରୁ ପୁତୁରୁ ନାରେ ନାରେ ନଗେଇବ ମାରିକି ଶଳାର ଦାନ୍ତ ଝଡ଼େଇ ଦେବି । ... ଶଳାକୁ ରାତି ଅଧିଆ ହବ ଯେ ବୋଲୁଅ ମାଡ଼ ।

ଦ୍ୱିତୀୟ ଅଭିନେତା ।। ହେଃ ... କାଇଁକି ସେମିତି ହଉଚୁ ବେ ! ଦେଖିଲୁ ... ଟୋକାଟା ଇଆଡ଼େ ଆସୁଚି ନା କଣ ?

ପ୍ରଥମ ଅଭିନେତା ।। ତା' ପଛେ ପଛେ ନେତ ମାଉସୀ ବି ଆସୁଚି ...

ଦ୍ୱିତୀୟ ଅଭିନେତା ।। ପଳେଇ ଚାଲ - ଆପେ ବଂଚିଲେ ବାପର ନାଁ ..
(ଦୁହେଁ କୁଦାମାରି ଦୌଡ଼ି ଚାଲିଗଲେ)

ନେତ ।। କଣ କରିବି ପୁଅ - ତୋର କୋଟିଏ ବରଷ ଆଉଷ ହଉ ... ଗରୀବ ଘରର ପୁଅ ବୋଲି ସିନା ଗରିବର ଦୁଃଖ ବୁଝିଲୁ ବାପା - କଂଥା ସିଲେଇ କରି ପୁଅଟାକୁ ବାଇଶି ବରଷର କରିଥିଲି । ଗଲାସନ ଦିଆଲୀରେ ବାଣ ତିଆରି କରୁଥିଲା ... (କାଂଦିପକେଇଲା) କଣ ହେଲା ହଠାତ୍ ଦେଖିଲା ବୋଳକୁ ଘରସାରା ଧୂଆଁ ...

ସଦାଶିବ ।। ବିଚରା ...

ନେତ ।। ସେଇଥିରେ ଗଲାଯେ ପୁଅ ଆଖିରୁ ଲୁହ ଶୁଖିନି, ପୁଣି ଦେଖ ବୁଢ଼ାକୁ ବିପତ୍ତି ପଇଲା । ମୁଁ ସିନା ଘରେ ବସି କଂଥା ସିଲେଇ କରିଦେବିରେ ପୁଅ, ବଜାରକୁ ଯାଇତ ବିକି ପାରିବିନି !! ଘରେ ଯୁବତୀ ଝିଅ ଛାଡ଼ି କୁଆଡ଼େ ଯିବି କହୁନୁ ? ଏ ସାଇର ବାଡ଼ିପଡ଼ା ଟୋକା ଗୁଡ଼ାକ ହେଲେ କୋଉ ଭଲ ଯେ ... କୋଠା ଉପରୁ ଅଗଣାକୁ ଟେକା ପକେଇବେ !!

ସଦାଶିବ ।। ଯାଉଚି ମାଉସୀ !

ନେତ ।। କୁଆଡ଼େ ଇମିତି ଯିବୁ ଯେ ତରତର ହଉଚୁ ?
ସଦାଶିବ ।। ମୁଁ ପୁଣି ଆସିବି ମାଉସୀ ।
ନେତ ।। କି କାମ କରୁଚୁ ?
ସଦାଶିବ ।। (ଉତ୍ତର ଦେଇନି)
ନେତ ।। ଯାହାବି କର, ନିୟାଅରେ କର । ଭଲପିଲା ହୁଅ ।

(ନେତ ଚାଲିଗଲା । ମଂଚ ଉପରେ ସଦାଶିବ ଏକା । ଏକ ଗଂଭୀର ଆବହ ସଂଗୀତ ଭିତରେ ଆଲୋକ ସିମୀତ ହେଇ ସଦାଶିବର ମୁହଁ ଉପରେ ଠୁଳ ହେଲା)

ସଦାଶିବ ।। ମୁଁ ଭଲପିଲା ହେବି ... ସବୁବେଳେ ସତ କହିବି ... ଗଣ୍ଡଗୋଳ ଯାଗାକୁ ଯିବି ନାହିଁ । ଏମିତି ଗୁଡ଼ାଏ ଫମ୍ପା ନୀତିବାକ୍ୟର ଜୀବାଣୁ ମୋ ଭିତରେ ପଶି ମତେ ମୋର ସାହସ ଓ ବଂଚିବାର ଇଚ୍ଛାକୁ ଟିକ୍ ଟିକ୍ କରି କାଟି ପକେଇଛି । ... ତା'ପରେ ମୁଁ ଗୋଟାଏ ଘୁଣଖିଆ କାଠଗଣ୍ଡି ଭଳି ଫୋପାଡ଼ି ହେଇ ପଡ଼ିଛି ବଂଚିବାର ଜୀବନ ମୂର୍ଚ୍ଛା ସଂଗ୍ରାମ ଭିତରକୁ ...

ମୁଁ କିଏ ? ମୁଁ ଜାଣେନା ... ପିଲାଦିନେ ମୋ ନାଁ ଲେଖା ହେଇଥିଲା ସଦାଶିବ ଦାସ ... ଫାଷ୍ଟକ୍ଲାସ ପାଇଲା ପରେ ସେଇ ନାଁରେ ମତେ ଗୋଟାଏ ସାର୍ଟିଫିକେଟ ମିଳିଥିଲା । ସେଇଦିନ ସେଇଟାକୁ ଜାକି ଦେଲା ପରେ ମୋ'ର ନାଁ ନାଇଁ, ପରିଚୟ ନାହିଁ ...ଚାକିରୀ ନାଇଁ ... ମୁଣ୍ଡ ଉପରେ ଛାତ ନାହିଁ ... ଖାଇବା ପାଇଁ ଭାତ ନାଇଁ-ନାହିଁ-ନାହିଁ-ନାହିଁ-ନାହିଁ-ନାହିଁର ଗୋଟେ ଆକାଶଛୁଆଁ ସ୍ତୂପ ଉପରେ ଠିଆ ହୋଇ ଚାଟଶାଳୀର ସଦାଶିବ ଦାସ ଶୂନ୍ୟକୁ ଚାହିଁ ଚିତ୍କାର କରୁଛି ... ଏତେ ତୀବ୍ର ସେଇ ଚିତ୍କାର ଯେ ତାହା ମତେ ମଧ ଶୁଭୁନି । ... ମୁଁ ଜାଣେନା ମୋ କଥା ଆପଣ ମାନଙ୍କ କାନରେ ପଡୁଛି କି ନାଇଁ ... ଆପଣ ମାନଙ୍କୁ ହୁଏତ ଲାଗୁଥିବ ମୁଁ ଏକ ସିନେମା ବା ନାଟକର ଚରିତ୍ର । ସେମିତି ଭାବିବାଟା ସବୁଠାରୁ ସହଜ ... ସତ କଥାକୁ

କାହାଣୀ ଭାବି ନିଜକୁ ଠକିବା ଖୁବ୍ ସହଜ । କହନ୍ତୁ ...
ମୋ ଚିତ୍କାର ଆପଣ ମାନଙ୍କୁ ଶୁଭୁଛି ?
(ହଠାତ୍ ଗୋଟାଏ ମାଲଗାଡ଼ି ଯିବାର ଶବ୍ଦ । ପ୍ଲାଟଫର୍ମର ଘୋ ଘୋ ଶବ୍ଦ ଏବଂ ତାରି ଭିତରେ ନିଜର ଅଶାନ୍ତ ଚିତ୍କାର ଭିତରେ ହଜିଗଲା ସଦାଶିବ । ମାଲ୍‌ଗାଡ଼ିର ଡ଼ବା ଭିତର ଦେଇ ତା ମୁହଁ ଉପରେ ଆଲୁଅ ଗତି କରୁଥିଲା । ପଛରୁ ଆସିଲା ରାଜା)

ରାଜା ।। (ସଦାର କାନ୍ଧରେ ହାତ ପକେଇ) କାହାକୁ ଶୁଭିବ ? କାହାକୁ ତୋର ଚିତ୍କାର ଶୁଭିବ ବୋଲି ଭାବୁଚୁ ବେ ? ବସ୍, ଟ୍ରେନ୍ ଭାଷଣ, ସ୍ଲୋଗାନ୍ ଆଉ ଷ୍ଟ୍ରାଇକ୍‌ର ଚିତ୍କାର .. ନେତା ମାନଙ୍କର ଚିତ୍କାର ... ଆଉ ଜନତାର ଚିତ୍କାର୍ ହେଲେ ବାପା, କାହାକଥା କାହାକୁ ଶୁଭେନି ଏଇଠି ।

ସଦାଶିବ ।। ଶୁଭିବ ... ଅଲବତ୍ ଶୁଭିବ ।

ରାଜା ।। ଗାଁବାଲା - ତୋ ଦେଇ ଚିତ୍କାର କରିବା ଛଡ଼ା ଆଉ କିଛି ହେବନି । କାରଣ, ଏ ଦେଶରେ ସମସ୍ତେ ନିଜ ନିଜ କଥା କହି, ଖାଲି ଚିତ୍କାର କରୁଛନ୍ତି ।--

ସଦାଶିବ ।। କିଏ କ'ଣ କରିବ ? ... ଏ ଦେଶରେ ଏତେ ଦୁଃଖ .. ଶାସନର ରଥଚକ ତଳେ କିଏ କେତେ ପେଶି ହେଇଯାଉଛନ୍ତି ତା'ର ହିସାବ ନାହିଁ ... ଭୋକରେ ସମସ୍ତେ ଜଳୁଛନ୍ତି । କରିବା ପାଇଁ ଶକ୍ତି ନାହିଁ ... ଯିଏ ଯା'ର ବ୍ୟକ୍ତିଗତ ସମସ୍ୟା ନେଇ ବ୍ୟସ୍ତ-!!

ରାଜା ।। ଆଉ ତୁ ତୋର ପ୍ରେମ କର .... ତମେ ଶଳା ଗାଁବାଲା ସବୁ କେମିତି ଯେ ପ୍ରେମ କର ...

ସଦାଶିବ ।। ଭାରି ଗରିବରେ ରାଜା, ଏତେ ଗରିବ ଘରେ ଏତେ ସୁନ୍ଦର ଝିଅ କେମିତି ଯେ ଜନ୍ମ ହୁଅନ୍ତି ...

ରାଜା ।। କିଛି ପରବାୟ ନାହିଁ ୟାର । ଜାତି, ଗୋତ୍ର, ଚେହେରା, ଗୋରୀ, କାଳୀ, ନିର୍ବିଶେଷରେ ସବୁ ଟୋକା ଶେଷକୁ ଦିନେ ନା ଦିନେ ଫସି ଯାଆନ୍ତି ।

ସଦାଶିବ ।। ହେଃ - ତୁ' ଜାଣିନୁ ! ଏଇଟା ଅଲଗା -

ରାଜା ।। ମତେ ତୋର ଗାଁବାଲା ବୁଦ୍ଧି ଆଉ ଶିଖାନା ବେ ! ମୁଁ ବି ଚାଖି ଚାଖି ବଜାରର ଅଧେ କମଳା ଖାଇଗଲିଣି - କୋଉଟା କେମିତି

ମିଠା ତ - କୋଉଟା ଟିକେ ଖଟା ... ନହେଲେ କୋଉଟା ଟିକିଏ ପଚରା ପଡ଼ିଛି । ହେଲେ ସବୁ ଗୋଟାଏ ଜାତି ।

ସଦାଶିବ ।। ଭାବୁଚି ପୁଣି ତାଙ୍କ ଘରକୁ ଯିବି ।

ରାଜା ।। ପୁଣି କ'ଣ ଯିବୁ ? ଶଳା ଷ୍ଟ୍ରାଇକ୍ ଭଲ ହେଲା ତୋର ପ୍ରେମ ଯୋଗ ଚାଲିଛି । ଡ଼େଲି ତାଙ୍କ ଘରକୁ ଦୌଡ଼ୁଚୁ ।

ସଦାଶିବ ।। ଏଥର ତା' ପାଇଁ ଖଣ୍ଡେ ଶାଢ଼ୀ ନେବି । ମାସେ ଏଥିପାଇଁ ଉପାସ ରହିବାକୁ ପଡ଼ିବ । ପରବାଏ ନାହିଁ ।

ରାଜା ।। ଯାଃ ଶଳା .... ଶେଷକୁ ସେଇଟାକୁ ବାହା ହେଇ ପଡ଼ିବୁ ... ଯାହା ଜଣାଗଲାଣି -

ସଦାଶିବ ।। ଦେଖ କ'ଣ ହେଉଛି - ପଚାଶ ଟଙ୍କା ଦେଲୁ ।

ରାଜା ।। କ'ଣ ଶାଢ଼ୀ କିଣା ହବ ? ହଉ .. ଆ ଏଇ ହୋଟେଲରୁ ଶହେ ଟଙ୍କିଆଟା ଭଂଗେଇ ଦେବି ।

ସଦାଶିବ ।। ଆଜି ଶହେ ଟଙ୍କିଆ ଉପରେ କାରବାର !

ରାଜା ।। ଆହୁରି ମିଳିବ । ପଇସା ମିଳୁଥିଲା ଯାଏ ଷ୍ଟ୍ରାଇକ୍ ଚାଲୁ । ନହେଲେ ବନ୍ଦ ।

(ଦୁହେଁ ଚାଲିଗଲା ପରେ କାଳୁ ଓ ନେତ ଆସିଛନ୍ତି । କାଳୁ ଖୁବ୍ ରୋଗୀଣା ହୋଇଯାଇଛି ।)

କାଳୁ ।। ସଦେଇଟା ଭଲ ପିଲାଟେ ! ତୋର ମନ ପାଉଛି ?

ନେତ ।। ବାଡ଼ିପଡ଼ା ମଦୁଆଟେ, ପଇସା ମିଳିଲେ ଉଡ଼େଇ ଦେବ ।

କାଳୁ ।। ତାକୁ ଘରଯୋଇଁ କରିଦେଲେ କେମିତି ହୁଅନ୍ତା ?

ନେତ ।। କରୁନ, ଆମର ତ ପୁଅ ନାହିଁ ।

କାଳୁ ।। ମୁଁ ବି ଆଉ କାମକୁ ପାରୁନି । ଶ୍ୱାସ ରୋଗଟା ଖୁବ୍ ...

ନେତ ।। ସେ ବାଡ଼ିପଡ଼ା ଏଠି ରହିବତ ?

କାଳୁ ।। ମାସେ ହେଲା ତ ସିଏ ଘର ଚଳଉଚି ।

ନେତ ।। ତମ ମନକୁ ଯଦି ପାଉଛି ତା' ହେଲେ କର ।

(ଆବହ ସଂଗୀତ ଚଂଚଳ ହୋଇ ଉଠିଲା । ମଂଚ ପୁଣି ଅଂଧାର ହେଲା ଓ ସାହାନାଇରେ ବାହାଘରର ହଇହଲା ସୃଷ୍ଟି ହେଲା । ମଂଚରେ ଗୋଟାଏ ଦୁଇଟି ଆଲୁଅର କରାମତି ଓ ବାଣ ଇତ୍ୟାଦି ଫୁଟା ଯାଇପାରେ । ହୁଳହୁଳି ସ୍ୱର, ମନ୍ତ୍ରପାଠ କରାଯାଇପାରେ)

କାଳୁ ।। ଦଶଟା ନଡ଼ିଆ, ଦି'ଟା ମୁକୁଟ, ଫେଣାଏ କଦଳୀ ।
ନେତ ।। ବଉଳ ପାଟ ଦି'ଟା ହଳେ ଧୋତି, ଗୋଟାଏ ଗଂଜି
କାଳୁ ।। ଦଶ କିଲୋ ଚାଉଳ, ଦି କିଲୋ ଡ଼ାଲି ପନ୍ଦର କିଲୋ ମାଛ ।
ନେତ ।। ରୂପା ମୁଦି ଦି'ହଳ, ଅମଳା ତେଲ ଗୋଟାଏ ଶିଶି, ଦି' ବୋତଲ ଅଳତା ।
ସଦାଶିବ ।। (ହଠାତ୍ ପ୍ରବେଶ କରି) ଅଢ଼େଇଶ ଜିରା, ଦଶ କିଲୋ ଆଳୁ, ଦଶ କିଲୋ ଚିନି -
ନେତ ।। (ଚିହିଁକି ଉଠି) ବାଡ଼ିପଡ଼ା, ଅଳାଜୁକ ବେହିଆ, ନିଜ ବାହାଘର ନିଜେ କରୁଛି ।
ସଦାଶିବ ।। ମୁଁ ନକଲେ ଆଉ କରିବ କିଏ ?
ନେତ ।। କାହିଁକି ? ମୁଁ କ'ଣ କରି ପାରିବିନି ? ତୁ ଗଲୁ ଏଇଠୁ ବାଡ଼ିପଡ଼ା । (ସଦାଶିବ ଦୌଡ଼ି ଯାଉଛି ଓ ମଂଚ ଅଂଧାର ହେଲା । ପୁଣି ଆଲୋକ ଆସିଲା ବେଳକୁ ରାଜା ସିଗାରେଟ୍ ପିଉଛି ଓ ଦେଖା ହେଉଛି ସଦା ସାଂଗରେ)
ରାଜା ।। କିହୋ ସଦେଇ ବାବୁ ! ଅନେକ ଦିନ ପରେ ଦେଖା ଯେ, କଣ ଉତ୍ତମ ସ୍ୱାମୀ ଆଉ ଆଦର୍ଶ ବୋପା ହେବା ପାଇଁ ସାଧନା ଚାଲିଛି ?
ସଦାଶିବ ।। ହଁ ଭାଇ । ଭଲ ପିଲା ଆଉ ହେଇ ପାରିଚି କୋଉଠୁ ? ପଛରେ ପୋଲିସ ଲାଗି ରହିଛି ।
ରାଜା ।। ଆଉ ଆମ ଗ୍ୟାଙ୍ଗ ତ ଛାଡ଼ି ଦେଲ ଗ୍ରାମବାସୀ ବାବୁ -- ବର୍ତ୍ତମାନ ଗୁଜୁରାଣ ମେଣ୍ଟୁଛି କେମିତି ?
ସଦାଶିବ ।। ବୁଲି ବୁଲି କଂଥା ବିକ୍ରୀ କରୁଛି । ଗୋଟେ ବିକ୍ରି ହେଲେ ଦଶଟଙ୍କା ଲାଭ । ଖାଇବାକୁ ଚାରିପ୍ରାଣୀ ....
ରାଜା ।। ମୁଁ ବି ୟା ଭିତରେ ଗୋଟେ କୋଠି କିଣି ପକେଇଛି । ଶଳା ଆଉ କିଛି ଦିନ ଏମିତି ଷ୍ଟ୍ରାଇକ୍ ଚାଲିଲେ ନା ଗୋଟେ କାର୍ କିଣିବି । .... ଆଜିକାଲି ପଚାଶ ହଜାର ଲାଭ - ନହେଲେ ଧଂଦା କରୁନି ।
ସଦାଶିବ ।। ଅଥଚ ମୁଁ ଏପର୍ଯ୍ୟନ୍ତ ଗ୍ରୀନ୍ ମଡ଼େଲ୍ ରାଲେ ସାଇକଲଟେ କିଣି ପାରିଲିନି । ଭାବିଥିଲି ବାହା ହେଲା ପରେ ଘଉରୀକୁ ନେଇ ସିନେମା ଯିବି । ବାଲ୍‌କୋନିରେ ବସିବି । ଇଣ୍ଟରଭାଲରେ ଚନାଚୂର

ଖାଇବି ଓ ଫେରିଲା ବେଳେ ରିକ୍ସାରେ ଫେରିବି । ଏ ପର୍ଯ୍ୟନ୍ତ ହେଇ ପାରିଲା ନାହିଁ ।

ରାଜା ॥ ପରବାଏ ନାହିଁ ସଦେଇ ! ମୋ ଦୁଆର ତୋ ପାଇଁ ସବୁବେଳେ ଖୋଲା । ଏଇତ ... ଯାପରେ ଗୋଟାଏ ମଟର କଂପାନୀ ଷ୍ଟ୍ରାଇକ୍ ହେବ । .... ଏଇ ଷ୍ଟ୍ରାଇକ୍‌ଟା ଯଦି ଚାଲୁ ରହିଯାଏ, କୌଣସି ମତେ ତା'ହେଲେ ତ ଚାଲିଲା ତା'ରି ଭିତରେ ଲୁଟ୍ । ଯଦି ରାତାରାତି ଗରିବୀ ହଟେଇବାକୁ ଚେଷ୍ଟା କରିବୁ ତା ହେଲେ ମତେ କହିବୁ । ଏ ଗୁଡ଼ାକ ଆମ ଜୀବନରେ ଗୋଟାଏ ଗୋଟାଏ ମଉକା, ବୁଝିଲୁ ସଦେଇ ! ଜୀବନଟା ସାରା କଂଥା ବିକିଲେ କିଛି ହେବନି ।

ସଦାଶିବ ॥ ମୁଁ ଆସୁଛି ରାଜା ! ଦଶଟା ବାଜିଲାଣି । ମୋର ଘରକୁ ଫେରିବା ଉଚିତ ।

ରାଜା ॥ ଯା' ବେଟା --- ଏ ଦାଗୀ ଚୋର ରାଜାଟାକୁ ଯେମିତି ନଭୁଲୁ ।
(ସଦା ଯେଉଁ ପଟେ ଗଲା ତା'ର ଅନ୍ୟପଟୁ ନକୁଳ ଜେନା ଓ ପଞ୍ଚା ଦାସ ପ୍ରବେଶ କଲେ)

ନକୁଳ ॥ ଆଜ୍ଞା ପଞ୍ଚାନନ ବାବୁଙ୍କୁ ନେଇ ଆସିଚି ।

ପଞ୍ଚାନନ ॥ ନମସ୍କାର ।

ରାଜା ॥ ନମସ୍କାର, ପୁଣିଥରେ ଦରକାର ପଡ଼ିଲା ନା କ'ଣ ?

ପଞ୍ଚାନନ ॥ ଆପଣ ରାଜାବାବୁ ନ ବୁଝିଲେ ଆମେ ମରିଗଲୁ ବୋଲି ଜାଣ । ଆଜ୍ଞା ଏଇ କଲେଜ ପିଲା ବାବୁ ! ସବୁବେଳେ ଖାଲି ହଇରାଣ କଲେ ... କଥା କଥାକେ ଧମକଉଛନ୍ତି ବସ୍ ଜାଳିଦେବୁ । .... କଥା କହିଲେ ଆଜ୍ଞା ଆପଣଙ୍କ ନାଁ କହୁଛନ୍ତି ।

ରାଜା ॥ କହିବେନି .... ଦେଶରେ ଶଳା ଯା'ର ଦି'ପଇସା ହେଇ ଯାଉଚି, ସିଏ ଭାବୁଛି ଏ ଦେଶଟା ତା'ର । ତମ ମାନଙ୍କର କ'ଣ କମ୍ ଉତ୍‌ପାତ ? ଗଣ୍ଡେ ଅଫିସରଙ୍କୁ ତ ମାଇ ପିଆଇ ପୋଷା ମନେଇଚ । ନାଇଁ ରେ ? ...

ପଞ୍ଚାନନ ॥ କ'ଣ କରିବା ଆଜ୍ଞା, ସରକାର ତ ପ୍ରାଇଭେଟ୍ ବସ୍ ରୁଟ୍ ପେରମିଟ ବଂଦ କରିଦେଲେ । ଏଣେ କଂପାନୀର ହଜାର ହଜାର ଲୋକଙ୍କ ପେଟ ପାଟଣା ବଂଦ ହେବା ଉପରେ । ତାଙ୍କ ପେଟ କଥା ଚିନ୍ତା କରି ଆପଣଙ୍କ ପାଖକୁ ଆସିବାକୁ ପଡ଼ିଲା ।

ନକୁଳ ।। ମୋଟା ମୋଟି କଥା ଆଜ୍ଞା ଏଥର କୋଡ଼ିଏ ପଚିଶଟା ସରକାରୀ ବସ୍ ନପୋଡ଼ିଲେ ପ୍ରାଇଭେଟ୍ କଂପାନୀ ବନ୍ଦ ହୋଇଯିବ ।

ରାଜା ।। ଇଏତ ବଡ଼ ରିସ୍କ କାମ । କେତେ ବଜେଟ୍ ?

ପଞ୍ଚାନନ ।। ଅଶୀ ହଜାର !

ରାଜା ।। ମୋର ସେୟାର କେତେ ?

ପଞ୍ଚାନନ ।। ପଚାଶ ହଜାର !

ରାଜା ।। ମାଲ ସପ୍ଲାଇ ?

ପଞ୍ଚାନନ ।। ଆମର ହାତ ବୋମା, ଗ୍ରେନଡ୍, ରାଇଫଲ ସବୁ ଯୋଗାଇ ଦିଆଯିବ ।

ରାଜା ।। ଓ.କେ । ମୁଁ କଲେଜ ପିଲା ଠିକ୍ କରୁଛି । ଏ ବିଷୟରେ Political ମହଲରେ ମଧ୍ୟ ଟିକେ ଖବର କରିଦେବା ଉଚିତ । ଠିକ୍ ଅଛି । Election ପରେ ମୋ ସାଙ୍ଗରେ କଥାବାର୍ତ୍ତା କରିବ ।

ପଞ୍ଚାନନ ।। ଭାଇ ଡ଼େରି ହେଇଯିବ ।

ରାଜା ।। ସେକଥା ମୁଁ ବୁଝିବିନି । (ରାଜା ଚାଲିଗଲା) (ରାଜା ଚାଲିଗଲା ପରେ ନକୁଳ ଜେନା ଓ ପଂଚାନନ ଦାସ କଥାବାର୍ତ୍ତା କଲେ)

ପଞ୍ଚାନନ ।। ଏଇଟାକୁ ବର୍ତ୍ତମାନ କେତେ ସମୟ ଅପେକ୍ଷା କରିବାକୁ ପଡ଼ିବ ?

ନକୁଳ ।। ଇଲେକ୍ସନ୍ ପରେ କ'ଣ ଦେଖା କରିବାକୁ କହିଲା ?

ପଞ୍ଚାନନ ।। ଆରେ ଇଲେକ୍ସନରେ କ'ଣ ନାଇଁ କ'ଣ ହେବ - ଏଇ ଗହଳି ଭିତରେ କାମ କଲେ ସିନା ମୁନାଫା ...

ନକୁଳ ।। ମୁଁ ଆଜ୍ଞା ତା' ହେଲେ କେତେ ଲୋକ ଯୋଗାଡ଼ କରିବି ?

ପଞ୍ଚାନନ ।। ଚାରିଶହ ଯୋଗାଡ଼ କର । ଯେମିତି ଖୁବ୍ ଗଣ୍ଡଗୋଳ ହେବ ।

ନକୁଳ ।। ଚାରିଶହରେ କ'ଣ କାମ ହେବ ? ଗତଥର ମୁଁ ହଜାରେ ଜନତାକୁ ଆଣି ହାଜର କରେଇଥିଲି । ଏଇଥର ବି ହେବ ସାର୍ । ମୁଁ ବିରୋଧି ଦଳ ନେତାଙ୍କ ସଙ୍ଗେ କଥାବାର୍ତ୍ତା କରିଛି । ସେମାନେ ବି ଚାହିଁଛନ୍ତି ଖୁବ୍ ଧୁମ୍‌ଧଡ଼କା ହେଉ ।

ପଞ୍ଚାନନ ।। ସେଇତ ମଜା । ଯୋଉମାନେ ପାୱାରରେ ଅଛନ୍ତି ସେମାନେ ବି ଚାହିଁଛନ୍ତି ୧୪୪ ଜାରୀ ହୋଇଗଲେ ଆଉ ବିରୋଧୀ ଦଳ Election ପ୍ରଚାର କରିପାରିବେ ନାହିଁ ।

ନକୁଳ ।। ଏଇଥର ଦେଖିବେ ସାର । ଅଫିସ ବଜାର ସବୁ ବନ୍ଦ ହେବ । ୧୪୪ ଧାରା ଭାଙ୍ଗି ଲୋକେ ଆରେଷ୍ଟ ହେବେ । ଲୁହାବୁହା ଗ୍ୟାସ୍ ଫୁଟିବ । ସାଂଧ ଆଇନ ଲାଗୁ ହେବ । ତେବେ ଯାଇ ଜାଣିବେ ମଉକା ଆସିଗଲା ।

ପଞ୍ଚାନନ ।। ହଉ ! ମୁଁ ଯାଉଛି । ତମେ ଏଇ ବାର ହଜାର ରଖ ।

ନକୁଳ ।। ବାର ହଜାର ? ଏତିକିରେ କ'ଣ ହେବ ବାବୁ ? ଦେଖିଲା ଭଳି ଗୋଟାଏ ଶୋଭାଯାତ୍ରା ହେବଟି ?

ପଞ୍ଚାନନ ।। କାହିଁକି ? ତମର ଚାରିଶହ ଲୋକ ଆଣିବା କଥା ମୁଣ୍ଡ ପିଛା ତିନିଶଟଙ୍କା ଚାରି ତିରିକେ ବାର 'ବାରହଜାର ...

ନକୁଳ ।। କାଳେ ଦରକାର ପଡ଼ିବ ହାତରେ ହଜାରେ ଦି'ହଜାରେ ରଖିବି ।

ପଞ୍ଚାନନ ।। ସେଇଥି ପାଇଁ ତ ମୁଁ ଅଛି ।

ନକୁଳ ।। ଆଉ ମୋର ? ମୁଁ କ'ଣ ଭୋକ ଉପାସରେ ଦେଶସେବା କରୁଥିବି ?

ପଞ୍ଚାନନ ।। (ବିରକ୍ତି ଭାବ ଦେଖାଇ) ତମର କେତେ ଦରକାର ?

ନକୁଳ ।। ଦୁଇ ହଜାର ଦିଅନ୍ତୁ ।

ପଞ୍ଚାନନ ।। (ଚୋରା ପକେଟରୁ ପଇସା କାଢ଼ି) ନିଅ, ପବ୍ଲିକ୍ ଫଣ୍ଡର ପଇସା । ଏଇଟା ଆମର ଟ୍ରାନ୍ସପୋର୍ଟ ୟୁନିଅନର ଚାନ୍ଦା, ଦେଖିଚାହିଁ ଖର୍ଚ୍ଚ କରିବ ।

ନକୁଳ ।। (ଟଙ୍କା ନେଇ ଧୋତିରେ ବାଂଧି ଅଣ୍ଟାରେ ଖୋସିଦେଲା) ଆଜ୍ଞା । ତେବେ କଥା ହେଲା- ଦରଦାମ ଯାହା ବଢ଼ୁଛି, ସେଥିରେ ଯଦି ସେମାନେ ମୁଣ୍ଡପିଛା ତିରିଶ ଟଙ୍କାରେ ରାଜି ନହେବେ ....

ପଞ୍ଚାନନ ।। ରାଜି ନହେବେ କଣ ? ଚାରିଆଡ଼େ ଦୁର୍ଭିକ୍ଷ । ଦଳେ ଭୋକ ଉପାସରେ ମରନ୍ତେ ଏଠି ମାଗଣା ପଇସାରେ ସହର ବୁଲି ଆସିବେ । ରାଜଧାନୀ ଦେଖିବା ଭାଗ୍ୟର କଥା ।

ନକୁଳ ।। ହେଲା ଯେ, ସାର, ଆମ କଥା ତ ମାଲିକ ବୁଝୁନାହାନ୍ତି ?

ପଞ୍ଚାନନ ।। କିହୋ ତମ ପାଇଁ ପରା ଦୁଇ ହଜାର ଦେଲି ।

ନକୁଳ ।। ସେଇଟା କଣ ମୋ ପାଇଁ ? ସିଏ ସେଇଥିରେ ଖର୍ଚ୍ଚ ହେଇଯିବ । ଇଂରେଜ ସହ ଆଂଦୋଳନ ଚାଲିଥିଲା ବେଳେ ୫ ବର୍ଷ ଜେଲ୍‌ରେ ଥିଲି । ଆଜିକାଲି ଆଉ ମୋର ଦାମ୍ କଣ କିଛି ନାହିଁ ?

ଆଳିପୁଅ, ମାଳିପୁଅ ନେତା ହେଇ ମିନିଷ୍ଟର ହୋଇଗଲେ । ଆଜିକାଲିତ ଆଉ ଲିଡ଼ର ହେବାପାଇଁ ଜେଲ ଯିବାକୁ ପଡୁନି । ସେ ଗୁଡା କ'ଣ ଦରକାର ? ମାଲିକଠାରୁ ପଇସା ଝଡ଼େଇବା କାଇଦା ଜାଣିଗଲେ ନେତା !!

ନକୁଳ ।। ମତେ କେତେ ଦେବେ କୁହନ୍ତୁ ସାର୍, ସେଇଥିରୁ ମତେ କ'ଣ ମିଳିବ ? ପୁଣି କଲେଜ କଲେଜ ବୁଲି ପ୍ରେସିଡ଼େଣ୍ଟ ସେକ୍ରେଟାରୀଙ୍କୁ ମାଲପାଣି ପିଲେଇବାକୁ ପଡ଼ିବ ।

ପଞ୍ଚାନନ ।। ଓଃ ସେକଥା ମୁଁ ବୁଝିବି ।

ନକୁଳ ।। ତା' ହେଲେ ଆଜ୍ଞା ମୁଁ ଦୁଇ ହଜାରେ ଏତେବଡ଼ କାମ କରିପାରିବି ବୋଲି ଭାବୁଛନ୍ତି ! ଇଏ ଗୋଟେ କମ୍ ଝାମେଲା ଆଜ୍ଞା ! ?

ପଞ୍ଚାନନ ।। ତମେ ବଡ଼ ଅଡୁଆରେ ପକଉଚ ନକୁଳ ଜେନାଏ । କାମ ହଉ ପରେ ତମ କଥା ବୁଝିବା । ଏଁ ! ମୁଁ ଯାଉଛି ।

ନକୁଳ ।। ଏଁ ... ଏଁ ... କୁଆଡ଼େ ପଳେଇ ଯାଉଛନ୍ତି ଆଜ୍ଞା ?

ପଞ୍ଚାନନ ।। ଆଉ କ'ଣ କରିବି କହୁଚ ?

ନକୁଳ ।। ରାଜାକୁ ସାଙ୍ଗରେ ନେଇଯିବା । ସେଇଠି ଆଜ୍ଞା ମାଲଟା ବୁଲେଇ ଦେଲା ପରେ ସବୁ ଠିକ୍ ହେଇଯିବ ।

ପଞ୍ଚାନନ ।। ତମେ ସେ ଦାୟିତ୍ୱ ନିଅ ନକୁଳ । ମତେ କାହିଁକି ସେ ଲୋକଟାକୁ ଭାରି ଡ଼ର ମାଡୁଛି ।

ନକୁଳ ।। ତାହାହେଲେ ପରେ କେତେବେଳେ ସେକଥା ଦେଖିବା । ଆପଣ ଗାଡ଼ିରେ ଏଇଲେ ଘରକୁ ଯିବେଟି ? ମତେ ସିନେମା ହଲ ଛକ ପାଖରେ ଛାଡ଼ି ଦିଅନ୍ତୁ ।

ପଞ୍ଚାନନ ।। ଆସ । କାଲି ଯେମିତି ଷ୍ଟ୍ରାଇକ୍ ଦୁଇଗୁଣ ବଢ଼ିଯାଏ ! ବୁଝି ପାରୁଛ ? ....

ନକୁଳ ।। ଆଜ୍ଞା - ଆଜି ରାତିସାରା ପଛେ ଶୋଇବି ନାହିଁ, ଘର ଘର ବୁଲି ଲୋକ ସଂଗ୍ରହ କରିବି । ଏଣେ କଲେଜ ପିଲାଙ୍କ ପକେଟ୍ ଗରମ କରିଦେଲେ କାଲି ସକାଳୁ ଦେଖିବେ ... ସହର ସାରା ଖାଲି ନିଆଁ ଜଳୁଥିବ । ...

(ଦୁହେଁ ଚାଲିଗଲା ପରେ ଅଂଧାର ହୋଇଛି ଏବଂ ପୁଣି ଚାଲିଛି ଇନ୍‌କିଲାବ୍ ... ଜିନ୍ଦାବାଦ । ପୋଲିସ ଜୁଲମ ବନ୍ଦ କର'' ଇତ୍ୟାଦି

ଏବଂ ତା ସାଙ୍ଗରେ ପୁଣି ଲୁହବୁହା ଗ୍ୟାସ ଓ ଘୋ ଘୋ ଶବ୍ଦ । ଆଲୋକ ଆସିଲା ବେଳକୁ ଚତୁର୍ଥ ଓ ତୃତୀୟ ଅଭିନେତା ସାହି ଲୋକଙ୍କ ଭଳି ଅଭିନୟ କରି ଆସୁଥିଲେ । କଥାବାର୍ତ୍ତା ହୋଇ)

ଚତୁର୍ଥ ଅଭିନେତା ।। ଆଜି ଭାଇ ଆବହାଓ୍ୱା ଭାରି ଗରମ ।

ତୃତୀୟ ଅଭିନେତା ।। Spot କୁ ଯାଇଚୁ ନା କାହାଠୁ ଶୁଣିଛୁମ ?

ଚତୁର୍ଥ ଅଭିନେତା ।। ହେଃ, ମୁଁ ପରା ମାଧବ ମିଶ୍ର କୋଠା ଉପରୁ ସବୁ ଦେଖିଚିରେ, ଉଁଃ ! ପୋଲିସ୍ ଏସା ମାଡ଼ ମାଇଲା ତା ମା' ମରୁ - ଯୋଡ଼େ ପିଲା ହଗି ପକେଇଲେରେ ।

ଦ୍ୱିତୀୟ ଅଭିନେତା ।। କରୁଛନ୍ତି ବୋଲୁଅ ମାଡ଼ । ଯୋଡ଼େ ପୋଲିସ୍ ମୁଣ୍ଡ ଫଟେଇ ଦେଲେଣି ।

ଚତୁର୍ଥ ଅଭିନେତା ।। ସବୁ ଶଳା ଏଇ କଲେଜ ପିଲାଙ୍କ ଦୋଷ; ହଇରେ ତମେ ସବୁ ପାଠ ପଢ଼ିବା ପିଲା ... ଜାଂଦେଗୀରେ କେବେ ଷ୍ଟ୍ରାଇକ୍ ଦେଖିନ । କିଏ ଗୋଟେ ଶିଖେଇ ଦେଲା ବୋଲି ଗୁଳି ମୁହଁକୁ ଡ଼େଇଁ ପଡ଼ିଲ ?

ତୃତୀୟ ଅଭିନେତା ।। ହେଁ ... !! ତା ଭିତରେ ପୁଣି ପେଂଚ ଅଛି ନା ? ...

ଚତୁର୍ଥ ଅଭିନେତା ।। କ'ଣ କିରେ ?

ତୃତୀୟ ଅଭିନେତା ।। ନେତାମାନେ ପଇସା ପକେଇ ଦେଇଛନ୍ତି ।

ଚତୁର୍ଥ ଅଭିନେତା ।। ନାଇଁମ !

ତୃତୀୟ ଅଭିନେତା ।। ସତେ ମ !

(ଏ ଦୁହେଁ ଚାଲିଗଲେ । ବିପରୀତ ଦିଗରୁ ଦ୍ୱିତୀୟ ଓ ଚତୁର୍ଥ ଅଭିନେତା ପ୍ରବେଶ କଲେ)

ପ୍ରଥମ ଅଭିନେତା ।। ସବୁ ଦୋଷ ଶଳା ଏଇ ଅଫିସର ମାନଙ୍କର, ପଂଚାଦାସ ମଟର କଂପାନୀଠୁ ପଇସା ପକେଇ ଦେଇଛନ୍ତି ।

ଦ୍ୱିତୀୟ ଅଭିନେତା ।। ତମେ ଯାହା ବୁଝିଲ ଅଜା, ଖାଅଆଳୁ । ହଇହେ, ଅଫିସର କ'ଣ ଆସି ଲୋକଙ୍କୁ ବାଡ଼ଉଛନ୍ତି ? ଏଇ ପୋଲିସ୍ ଗୁଡ଼ାକ ଏମିତିକା ନା- ଯାଗା ନାଇଁ ଅଜାଗା ନାଇଁ ଲୋକଙ୍କୁ ପିଟି ଶୁଆଇ ଦେଉଛନ୍ତି

ପ୍ରଥମ ଅଭିନେତା ।। ପିଟି ଶୁଆଇ ଦେବେନି ? ହଇରେ ଦେଶରେ ଶୃଙ୍ଖଳା ରକ୍ଷା କରିବା ତାଙ୍କର କାମ । ତମେ ସବୁ ବାଘ ମାତିଲା

ଭଳି ଦାଣ୍ଡରେ ଡ଼େଇଁବ । ତମକୁ ବାଡ଼େଇବେନି ? କାହିଁ ଆମକୁ ବାଡ଼ଉନାହାନ୍ତି ?

ଦ୍ୱିତୀୟ ଅଭିନେତା ।। ତମେ ଯାଉନ ସେଠିକି କ'ଣ ହେଉଚି ଦେଖିବ ।

ପ୍ରଥମ ଅଭିନେତା ।। ଯାହା କହ କଲେଜ ପିଲା ଗୁଡ଼ାକ ଭାରି ଉଦ୍‌ବାର୍ଯ୍ୟ ହେଲେଣି । ହଇରେ ମଟର ଗାଡ଼ି କାହିଁକି ପୋଡୁଛ ! ସେଗୁଡ଼ା କ'ଣ ଦୋଷ କରିଥିଲେ ?

ଦ୍ୱିତୀୟ ଅଭିନେତା ।। ତମେ କିଛି ଜାଣିନ । ହଇହେ ମଟର ବାଲା ପରା ଗୁଣ୍ଡା ଲଗେଇ ସରକାରୀ ବସ୍ ପୋଡୁଛନ୍ତି । ସରକାରୀ ବସ୍ ପୋଡ଼ି ଦେଲେ ପ୍ରାଇଭେଟ୍ ବାଲାଙ୍କୁ ବସରୁଟ୍ ପିର୍‌ମିଟ୍ ମିଳିବ ।

ପ୍ରଥମ ଅଭିନେତା ।। ଯା' କୁହ ପୁଅ, ଏମାନେ ଏମିତି ପଲଟିକ୍‌ସ୍ କରିବେ ଆଉ ମାଡ଼ ଖାଇବ ସେ ଛେନା ବାଲାଟା । ବିଚରା ଛେନା ବିକୁଥିଲା । ତା ମୁଣ୍ଡ ଫଟେଇ ଦେଲେ ।

ଦ୍ୱିତୀୟ ଅଭିନେତା ।। ହଇହେ ହସପିଟାଲରେ ଗୋଟେ ମୁର୍ଦ୍ଦାର ପଡ଼ିଥିଲା । ତା ଭିତରେ ପଶି ମୁର୍ଦ୍ଦାରଟାର ହାଡ଼ ଭାଙ୍ଗି ଦେଲେ ପରା .... (ଭିତରୁ ଖୁବ୍ ଜୋରରେ ଦୌଡ଼ାଦୌଡ଼ି ଶୁଭିଲା । ପୋଲିସ୍‌ର ଯୋତା ଓ ଲୋକେ ଦୌଡ଼ି ପଳାଇଲା ବେଳର ପାଟିତୁଣ୍ଡ ... ଆଓ ଶାଲା କୌନ୍ ଇଧର ମା'କା ବେଟା ହୈ'' ଚଲେ ଆଓ ଶାଲେ'' ଜୟ ବଜରଙ୍ଗ ବାଲୀ'' ମାର ଶାଲାକୋ'' ଇତ୍ୟାଦି ଇତ୍ୟାଦି, ସେମାନେ ଚାଲିଗଲା ପରେ କିଛି ସମୟ ଥଣ୍ଡା ପଡ଼ିଗଲା । ଦ୍ୱିତୀୟ ଓ ତୃତୀୟ ଅଭିନେତା ଆସି ପହଂଚିଗଲେ । ''ଯୁଦ୍ଧ ହେଉ'' ଡ଼ାକରା ଦେଉଥିଲେ)

ତୃତୀୟ ଅଭିନେତା ।। (କୌଣସି ପୋଲିସ ନଥିବା ସ୍ଥାନକୁ ଚାହିଁ) ଆବେ ହେ ପୋଲିସ୍ ... ଗାଳି ଦେଉଛୁ କାହାକୁ ? ଶଳେ ନଢ଼େଇ କରିବତ ଲାଠି, ବଂଧୁକ ଧରି କ'ଣ ଆସୁଛ ? - ଆରେ ଖୋଲ ସାର୍ଟ ... ଭାଂଗ ଟିକେ ଟିକେ ହବ । ସମୁଦ୍ର ବାଲିରେ ଝାଡ଼ାଟା ବସି ଚାଲି ଆସିବା ... ତାପରେ ନଢ଼େଇ । ଆସ ତମ ଭିତରେ କିଏ ମରଦପିଲା ଅଛି ।

ଚତୁର୍ଥ ଅଭିନେତା ।। ଅଭିନେତା - ଆରେ ତାକଡ୍ ଅଛି ଯଦି ଚାଲିଆ । ଏଠି ନଳୀ ଫୁଟଉଛୁ କାହା ଉପରେ ? ... ସାର୍ଟ,ଗଂଞ୍ଜି ଖୋଲିଦେ, ଡେ଼ଇଁ ପଡ଼ ମଇଦାନ ଉପରକୁ ବେଂଗପାଣିଆ ନଢ଼େଇ ଦେଖିନୁ ମଣି .....

(ହଠାତ୍ ପୁଣି ଯୋତା ମଚ୍ ମଚ୍ ଶୁଭିଲା)

ତୃତୀୟ ଅଭିନେତା ।। ଆରିଆ ମା' ମରୁ ... ଆଇଲାରେ ଆଇଲାରେ ...

(ଦୁଇଜଣ ଅଭିନେତା ଦୌଡ଼ି ପଳେଇଗଲେ, ମଂଚ ଅଂଧାର ହେଲା) ପୁଣି ଆଲୋକିତ ହେଲା ବେଳକୁ ଦେଖାଗଲା ସଦାଶିବ ଉଦ୍ୟକ୍ତ ଅବସ୍ଥାରେ ଅଛି, କାଳୁ ସାମଲ ତାକୁ ବୁଝେଇ ଲାଗିଛି ।)

ସଦାଶିବ ।। ଦିନ ଦିନ ଖରାରେ ବୁଲି ମୁଁ ଏ କଂଥା ବିକି ପାରିବି ନାହିଁ ।

ନେତ ।। (ଭିତରୁ) ବିକି ପାରିବୁନି ତ ବାଡ଼ିପଡ଼ା ଏ ଘର ଚଳିବ କେମିତି ?

କାଳୁ ।। ବଂଚିବାକୁ ହେଲେ ଏମିତି ବୋଝ ବୋହିବାକୁ ପଡ଼ିବ । ଖରାରେ ବୁଲିବାକୁ ପଡ଼ିବ । ମତେ ଦେଖୁନୁ ବାପା, କଂଥା ବୋହି ବୋହି କେମିତି ପିଠିରୁ କୁଜ ବାହାରିଲାଣି ....

ସଦାଶିବ ।। ତମେ ପାରୁଥିଲ । ମୁଁ ପାରିବିନି ।ଏଥିରେ ପରିଶ୍ରମ ବେଶୀ, ଲାଭ କମ୍ । ମୋର ଗୋଟାଏ କୋଠା ଦରକାର ... ଖାଇବା ପାଇଁ ମୁଠାଏ ଭଲଭାବେ ଦରକାର ।

କାଳୁ ।। ସବୁ ହେବ । କିନ୍ତୁ ପରିଶ୍ରମକୁ ଡ଼ରିଲେ କିଛି ହେବ ନାହିଁ ।

ନେତ ।। ଏଇଟା ବାଡ଼ିପଡ଼ା ଗୋଟେ କରମ କୋଡ଼ିଆ ।

ସଦାଶିବ ।। ମୂଲ ଲାଗିବାକୁ ମୁଁ ରାଜି । କିନ୍ତୁ ମୁଁ ବଂଚିଲା ଭଳି ବଂଚିବାକୁ ଚାହେଁ । ଏ ଦେଶରେ ଯୋଉମାନେ କଳା ବଜାର କରି - ଲୋକଙ୍କୁ ଠକୁଛନ୍ତି, ସେମାନେ ରଜାପୁଅ ଭଳି ଚଳିବେ ... ଅଥଚ ... ମୁଁ ... ମୋର ଯୋଗ୍ୟତା ଅଛି । ମୁଁ ପରିଶ୍ରମ କରୁଛି । ମୁଁ କାହିଁକି ଅଭାବ ଭିତରେ ଘାଣ୍ଟି ହେବି ? ଗୋଟାଏ ଗ୍ରୀନ୍ ମଡ଼େଲ ସାଇକଲ୍ ପାଇଁ ସ୍ୱପ୍ନ ଦେଖି ଦେଖି ରାତି ପାହିଗଲା । କାହିଁକି ?

କାଳୁ ।। ଓଃ ! ତୁ' ପାଗଳଙ୍କ ଭଳି ହ'ନା । ଟଙ୍କା ପାଇଁ ଅପେକ୍ଷା କରିବାକୁ ହେବ । ଗୀତାରେ ଅଛି କର୍ମ କରିଯାଅ । ଫଳକୁ ଅପେକ୍ଷା କରନାହିଁ । ଫଳ ଆପେ ଆପେ ମିଳିବ ।

ସଦାଶିବ ।। ଆପେ ଆପେ ମିଳିବ ? ହଉ ମିଳୁଛି ତମକୁ !! ଜୀବନ ସାରା କଂଥା ସିଲେଇ କରି କରି ଦି'ବେଳା ଦି'ମୁଠା ଖାଇବାକୁ ପାଉନାହିଁ ।

କାଳୁ ।। ଅପେକ୍ଷା କର ।

ସଦାଶିବ ।। ଅପେକ୍ଷା ? କେତେଦିନ ? କେତେ ବର୍ଷ ଧରି ଏ ଦେଶରେ ଗୋଟାଏ ନୂଆ ଯୁଗ ଆସିବ ବୋଲି ମୁଁ ଅପେକ୍ଷା କରିଥିବି ? ମୋର ଇଚ୍ଛା ହେଉଛି ମୁଁ ଯାଇ ପୁଣି ରାଜା ସାଙ୍ଗେ ହାତ ମିଳେଇବି ପୁଣି ଜାଳିବି ଏ ସହରକୁ ...

କାଳୁ ।। ହଉ, କାଲି ପଛେ ସହରରେ ନିଆଁ ଲଗେଇବୁ .. ଆଜି ମାଇ ନେଇ ଯା' -

ସଦାଶିବ ।। ଦଶଦିନ ହେଲା ଷ୍ଟ୍ରାଇକ୍ !! ବେପାର ନାଇଁ, ଖାଇବାକୁ ନାଇଁ ।

କାଳୁ ।। ସେଇଥିପାଇଁ କହୁଛି ଯା' । ତୁ ନଗଲେ ମତେ ଯିବାକୁ ହେବ । ତୁ ଯଦି ଚାହୁଁ ମୁଁ ଏ ବୟସରେ ରୋଗୀଣା ଦେହ ନେଇ ପୁଣି ମାଡ଼ ଖାଇବି ...

ସଦାଶିବ ।। ତମେ କାହିଁକି ମାଡ଼ ଖାଇବ ? ମୁଁ ଖାଇବାକୁ ପ୍ରସ୍ତୁତ । କିନ୍ତୁ ନିରୀହ କଂଥା ବିକାଳୀ ହୋଇ ପୋଲିସ୍‌ଠୁ ମାଡ଼ ଖାଇବା ଅପେକ୍ଷା ଗୋଟାଏ କିଛି କରିବା ଭଲ ।
(ଟିକେ ଅପେକ୍ଷା କରିଛି । କିଛି ଚିଂନ୍ତା କରିଛି । ଆଖି ଦି'ଟା ଜଳୁଥିଲା) ଠିକ୍ ଅଛି ... ମୁଁ ଯାଉଛି (ଚାଲିଗଲା)

କାଳୁ ।। (ଘରକୁ ଯାଉ ଯାଉ) ପାଗଳଟା ... ମୁଣ୍ଡରେ କିନ୍ତୁ ବୁଦ୍ଧି ଅଛି ପିଲାଟାର ।

ନେତ ।। ବଡ଼ିପଡ଼ା । ମୁଣ୍ଡ ପାଗଲିଆଟେ - ଗଉରୀ ଦେହ ଭଲ ନାହିଁ ... ଘରେ ଖାଇବାକୁ ନାଇଁ । କୁଆଡ଼େ ଚାଲିଗଲା ?

କାଳୁ ।। ରାତିକି ଫେରି ଆସିବ ଯେ ...
(ମଂଚ ଖାଲି, କ୍ରମଶଃ ମଂଚର ଆଲୋକ ମ୍ଳାନ ହେଲା । ଦୂରରୁ ଶୁଭୁଥିଲା "ରାଜା" "ରାଜା" "ରାଜା" ... ମଂଚରେ ସଂପୂର୍ଣ୍ଣ ଆଲୋକ ଆସିଲା ବେଳକୁ ଦେଖାଗଲା ରାଜା ଓ ସଦା କଥାବାର୍ତ୍ତା କରୁଛନ୍ତି)

ରାଜା ।। ପଚାଶ ହଜାର ଟଙ୍କାର କଣ୍ଟ୍ରାକ୍ଟ ହେଉଛି । ବାଛିଗଲେ ଏଥର ଗୋଟେ କାର କିଣିବି । ବୁଝୁଚୁ ଗାଁ ବାଲା ? ତୁ ଶଳାର ସବୁଥାର

ଶେଷକୁ ଭଲପିଲା ହେବାକୁ ଯାଇ କଂଥା ବିକୁଛୁ । ... ଆଉ ମୁଁ ଡ଼ଷ୍ଟବିନ୍ ତଳୁ ଅଇଁଠା ପତର ଚାଟୁଥିବା ରାଜା ଆଜି କାର୍ କିଣିବି । ମୁଁ ଗୋଟେ କାର୍ କିଣିବି ବେ । ... ଏଇ ଯୋଉ ବଡ଼ଲୋକ ଧୂଳି ଉଡ଼େଇ ... କାଦୁଅ ପାଣି ଛିଟକେଇ ରାସ୍ତାରେ କାର୍ ଚଳଉଛନ୍ତି ଠିକ୍ ତାଙ୍କରି ଭଳି ...

ବୁଝୁଚୁ ସଦେଇ ? ବାଇଶ ବର୍ଷ ତଳେ କୌଣସି ଦୁର୍ଘଟଣା ବଶତଃ ଫାଟି ଯାଇଥିବା "ନିରୋଧ" ଭିତରୁ ମୋର ଜନ୍ମ । ... ମୁଁ କୁଆଡ଼େ ଛୁଆ । (ଖୁବ୍ ଜୋରରେ ହସିଲା .... ତା ହସରୁ ଜଣା ପଡୁଥିଲା ସେ ଖୁବ୍ ପିଇଥିଲା ଏବଂ ତାର ମାନସିକ ଅବସ୍ଥା ସୁସ୍ଥ ନଥିଲା ।) ଆଜି ମୁଁ ସେଇ ନା' ନଜାଣିଥିବା ବାପ ମା ମାନଙ୍କ ଉପରେ ପ୍ରତିଶୋଧ ନେବାକୁ ଚାହେଁ ।

ସଦାଶିବ ।। ଠିକ୍ ଅଛି ରାଜା । ମୁଁ ଏ ଶୈତାନ ସମାଜକୁ ଜାଳିଦେବାକୁ ଚାହେଁ । ପିଲାଦିନେ ପାଠ ପଢ଼ିଥିଲି ରାଜା .... କିଏ ଗୋଟେ କହିଥିଲା ଏ ଦୁନିଆରେ ଯୋଗ୍ୟ ଲୋକ ବଂଚନ୍ତି ଆଉ ଅଯୋଗ୍ୟ ଲୋକ ମରିଯାନ୍ତି । ମୁଁ ମେଟ୍ରିକ୍ ଫାଷ୍ଟ ଡ଼ିଭିଜନ ପାଇ ସିନା ଅଯୋଗ୍ୟ ହୋଇଗଲି ରାଜା ... ମତେ ଯେଉଁମାନେ ଅଯୋଗ୍ୟ ବୋଲି ଫୋପାଡ଼ି ଦେଇଛନ୍ତି ସେମାନଙ୍କୁ ଜାଳି ଦେବା ପାଇଁ ମୁଁ ଯୋଗ୍ୟ ।

ରାଜା ।। ମିଳାଓ ହାତ୍ ।

ସଦାଶିବ ।। (ହାତ ମିଳେଇ) ମୁଁ ବଂଚିଲା ଭଳି ବଂଚିବାକୁ ଚାହେଁ ରାଜା !

ରାଜା ।। ଆମେ ବଂଚିବା । ମୁଁ ବଂଚେ କି ନ ବଂଚେ ପରବାୟ ନାହିଁ ସଦେଇ । ତୋର ବଂଚିବା ଉଚିତ । ତୁ ସୁଯୋଗ ପାଇଥିଲେ ଏ ଦେଶର ଅନେକ କାମରେ ଲଗି ଥାଆନ୍ତୁ । ଇଏ ବି ଗୋଟିଏ କାମ । ... ତୁ ବାହା ହେଇଗଲୁ । - ତୋ ଉପରେ ୫ଟା ଜୀବନ ନିର୍ଭର କରୁଛି । ... ତୋର ବଂଚିବା ଉଚିତ୍ । ଠିକ୍, ମୁଁ ତ ବେଶ୍ ଖୁସିରେ ଅଛି । ...

(ଦୂରରୁ ମାଡ଼ି ଆସିଲା ପୁଣି ସେଇ ସ୍ଲୋଗାନ । ଚିତ୍କାର ଓ ତା ସାଙ୍ଗରେ "ପୋଲିସ୍ ଜୁଲମ -- ବନ୍ଦକର", "ବନ୍ଦକର" ଚିତ୍କାର)

ଏଇ ... ସେମାନେ ଆଗରୁ ମାଡ଼ି ଆସୁଛନ୍ତି ... ଏଇଠି ମତେ

ଫିଲଡ୍ ଉପରକୁ ଯିବାକୁ ହେବ । ...
ପୋଲିସ ଭ୍ୟାନ୍... ତାକୁ ଛିଡି ପାରିଲେ ପଛରେ ବସଷ୍ଟାଣ୍ଡ ପେଟ୍ରୋଲ୍ ପମ୍ପଟାକୁ ଖୋଲି ଦେବାକୁ ପଡ଼ିବ । ତୁ ପେଟ୍ରୋଲ୍ ପକାଇବୁ ... ମୁଁ ନିଆଁ ଲଗେଇବି ...

ସଦାଶିବ ।। ଇଏତ ଗୁଡ଼ାଏ ପୋଲିସ ଫାଇରିଂ ଅର୍ଡ଼ର ହେଇଯାଇଛି ବୋଧହୁଏ ...

ରାଜା ।। ଏ ପର୍ଯ୍ୟନ୍ତ ହେଇନି । ହେଇପାରେ ( କାଂଧରେ ପକେଇଥିବା ବ୍ୟାଗ୍‌ରୁ ଗୋଟାଏ ହାତବୋମା ଦେଇଛି ସଦାକୁ ।) ଏଇଟାକୁ ରଖିଥା ପାଖରେ । ବେଶୀ ଜରୁରୀ ପଡ଼ିଲେ ବ୍ୟବହାର କରିବୁ । ମୁଁ ଚାଲିଲି ।

ସଦାଶିବ ।। Best of luck

ରାଜା ।। Bye.

(ସ୍ଲୋଗାନର ଚିତ୍କାର ସେମିତି ଶୁଭୁଥାଏ ଏବଂ ଲୁହବୁହା ଗ୍ୟାସ୍ ଶବ୍ଦ ମଧ୍ୟ ଭ୍ୟାନରୁ ପ୍ରଚାର କରାଯାଉଥାଏ)

ପ୍ରଚାର ଶବ୍ଦ : ସରକାରୀ ବସଷ୍ଟାଣ୍ଡ ଅଂଚଳକୁ ନିଷିଦ୍ଧ ଘୋଷଣା କରାଯାଇଛି । ଆପଣମାନେ ଶୋଭାଯାତ୍ରା ପଟୁଆର ଭାଙ୍ଗି ଚାଲି ଯାଆନ୍ତୁ । ... ନଚେତ୍ ଗୁଳି ଚାଳନା କରାଯିବ । ଆପଣମାନଙ୍କୁ ଅନୁରୋଧ ଏହି ସ୍ଥାନ ପରିତ୍ୟାଗ କରି ଚାଲିଯାଆନ୍ତୁ । ... ନଚେତ ଗୁଳି ଚାଳନା କରାଯିବ ।

ସଦାଶିବ ।। ଏ ଦେଶରେ ନିଷିଦ୍ଧ ଅଂଚଳ କୋଉଟା ମୁଁ ଜାଣିନି । ଆଉନ୍ ସଂବିଧାନ ସବୁ ତିଆରି କେତେଜଣ ସ୍ୱାର୍ଥପର ଲୋକଙ୍କ ଆତ୍ମରକ୍ଷା ପାଇଁ ... କୋଉ ଆଇନ୍ ମତେ ଏ ଦେଶରେ ନିଷିଦ୍ଧ ନାଗରିକ କରିଛି ମୁଁ ଜାଣିନି । କୋଉ ଆଇନ୍‌ରେ ମେଟ୍ରିକ୍ ଫାଷ୍ଟ ଡ଼ିଭିଜନ୍‌ରେ ପାଶ୍ କରିଥିବା ସଦାଶିବ ଦାସର ମୃତ୍ୟୁ ହେଲା ମୁଁ ଜାଣିନି ... ମୁଁ କିଛି ଜାଣିନି ... ତେଣୁ କରିବା ପାଇଁ କର୍ତ୍ତବ୍ୟ କିଛିନାହିଁ । ଦାୟିତ୍ୱ ମଧ୍ୟ । ଦେଶ ପାଇଁ ନୁହେଁ ... ଲୋକଙ୍କ ପାଇଁ ନୁହେଁ । ଲୋକେ ଗଢ଼ିଥିବା ସମାଜ ପାଇଁ ନୁହେଁ ।

(ପୁଣିଥରେ ଖୁବ୍ ଜୋରରେ ବୋମା ଫୁଟିବା ଶବ୍ଦ । ଏବଂ ପୋଲିସ୍‌ର ଗୁଳିଚାଳନା । ଦୌଡ଼ି ଆସିଛି ରାଜା ।)

ରାଜା ।। ସଦେଇ ଗୋଟେ କାମ କର । ମୋ ପାଖରୁ ବୋମା ସରିଗଲା ।

ସଦାଶିବ || କ'ଣ ? କ'ଣ କରିବି କହ !
ରାଜା || ପଛପଟେ ସେଇଠି ଯେଉଁ ଅଂଧାରିଆ ଜାଗାଟା ଅଛି -
ସଦାଶିବ || ହଁ ... ଗୁଡ଼ାଏ ଅମରି ଗଛ।
ରାଜା || ସେଇଠି ଗୋଟେ ଟୋକା ଠିଆ ହୋଇଥିବ। ମୋରି ଗ୍ୟାଙ୍ଗର। ତା ହାତରେ ଗୋଟାଏ ନାଲି ରୁମାଲ୍। ତା' ପାଖେ ଗୋଟେ - ଆଟାଚିରେ ମାଲ୍ ଅଛି। ନେଇ ଆସିବୁ।
ସଦାଶିବ || ପୂରା ଆଟାଚିଟା ନେଇ ଆସିବି ?
ରାଜା || ହଁ ମତେ ଦଶଟା ଦେବୁ।
ସଦାଶିବ || କିନ୍ତୁ ଲୋକଟା ମତେ କ'ଣ ଦେବ ? ମୁଁ ତ ଅନେକ ଦିନ ହେଲା ଘରସଂସାର ଭିତରେ ....
ରାଜା || (ପକେଟରୁ ଛୋଟ ଟର୍ଚ୍ଚଟିଏ ଦେଇ) ଏଇ ଟର୍ଚ୍ଚଟା ତିନିଥର ଜଳେଇ ଲିଭେଇବୁ - ଓ.କେ ? ଯା ... କୁଇକ୍ ..
(ସଦା ଦୌଡ଼ି ଯାଇଛି ଏବଂ ପୋଲିସ୍ ଗାଡ଼ି ମାଡ଼ି ଆସୁଛି। ପୁନରାୟ ପୋଲିସ୍ ଶବ୍ଦ ପ୍ରଚାର)।
ଆପଣମାନେ ବସଷ୍ଟାଣ୍ଡ ଅଂଚଳ ଛାଡ଼ି ଚାଲିଯାଆନ୍ତୁ। (ରାଜା ଗୋଟାଏ ହାତବୋମା ଫୋପାଡ଼ିଛି ପୋଲିସ ଉପରକୁ। ଭୀଷଣ ଶବ୍ଦ। ପୋଲିସର ଗୁଳିଚାଳନା ଶବ୍ଦ। ପୁଣି ଚିତ୍କାର। ରାଜା ଲୁଚି ଯାଇଛି। ପୁଣି ଗୋଟାଏ ହାତବୋମା- ଫୋପାଡ଼ିଲା ବେଳକୁ ପୋଲିସର ଗୁଳି ଆସି ବାଜିଛି ରାଜା ଉପରେ। ରାଜା ଓଲଟି ପଡ଼ିଛି ଗୋଟିଏ ଚିତ୍କାର କରି ଓ ଦୌଡ଼ି ଆସିଚି ସଦାଶିବ। ହାତରେ ଆଟାଚି ନେଇ। ରାଜାକୁ ଏପରି ଅବସ୍ଥାରେ ଦେଖି ତା ମୁହଁରୁ ଏକ ଅସ୍ପଷ୍ଟ ଯନ୍ତ୍ରଣାର ଶବ୍ଦ ବାହାରିଛି।)
ସଦାଶିବ || ମୁଁ ହାତବୋମା ନେଇ ଆସିଛି ରାଜା।
ରାଜା || ଚାଲିଯା, ଶୀଘ୍ର ଏଠୁ ଚାଲିଯା ସଦେଇ .... !
ସଦାଶିବ || କହ ମୁଁ ତୋପାଇଁ କଣ କରିବି ରାଜା .... ମୋ ହାତରେ ଶହେଟା ହାତବୋମା, ଦୁଇଟା ପିସ୍ତଲ। ପ୍ରାୟ ଶହେ ରାଉଣ୍ଡ ଗୁଳି। କହ ମୁଁ କ'ଣ କରିବି ?
ରାଜା || ଚାଲିଯା ସଦେଇ ... ଆଃ ... ଭୀଷଣ କଷ୍ଟ ... ମତେ ଟିକିଏ ଘୋଷାରି ... ଘୋଷାରି ... ଏଇଠୁ ନେଇଯା - ମୁଁ ପୋଲିସ୍ ହାତରେ ମରିବା ପାଇଁ ଚାହିଁ ନଥିଲିରେ - ସଦା .... ଆଃ ...

ସଦାଶିବ ।। ରାଜା .... !! (ପ୍ରାୟ କାନ୍ଦିବା ଅବସ୍ଥା । ଆଉ କେଉଁଠି ହେଇଥିଲେ ଚିତ୍‌କାର କରିଥାନ୍ତା ଯେମିତି) ତୋ ପାଇଁ ମୁଁ ଜୀବନ ଦେଇପାରେ ରାଜା .... କହ, ଯାଇ ପୋଲିସ୍ ଭ୍ୟାନକୁ ଉଡ଼େଇ ଦେବି । କହ ! ତୁ ଯାହା କହିବୁ ମୁଁ କରିବିରେ ... ରାଜା .... (ଉତ୍ତର ନପାଇ) ରାଜା ?

ସଦାଶିବ ।। ମୋ' ଜୀବନର କୌଣସି ମୂଲ୍ୟ ନଥିଲାରେ ସଦେଇ । ମୁଁ ତ ବେଧ ଛୁଆଟେ । ଏଇ ଡ଼ଷ୍ଟବିନ୍ ତଳେ ବାଇଶି ବର୍ଷ ତଳେ ମୁଁ ଜନ୍ମ ହେଇଥିଲି ।... ହେଲେ ତୋର ସ୍ତ୍ରୀ ଅଛି, ସଂସାର ଅଛି । ତୁ ଚାଲିଯା ...

ସଦାଶିବ ।। ରାଜା ! ତୁ ସମାଜ ଆଖିରେ ଯା ହୁଅ ପଛେ ମୋ ଆଖିରେ ତୁ ସବୁ ... ସବୁରେ ରାଜା ! ଏଇ ରାଜା ନଥିବା ଅରକ୍ଷ ଦେଶଟାରେ ତତେ ମୁଁ ରାଜା ବୋଲି ଭାବିଥିଲିରେ ଭାଇ; ରାଜା !! (କାନ୍ଦୁଥିଲା) କହ ତୋ ପାଇଁ କ'ଣ କରିପାରିବି ? ମୋ ଉପରେ ତୋର କଣ ଏତେ ଟିକେ ବିଶ୍ୱାସ ନାଇଁ ?

ରାଜା ।। ବିଶ୍ୱାସ ଅଛି । ବେଶ୍ ମୋ ପାଇଁ ଆଉ ଟିକେ କାମ କରିଦେ । ହଁ, ତୁ'ହିଁ ପାରିବୁ ।

ସଦାଶିବ ।। କ'ଣ ? କହ ରାଜା ?

ରାଜା ।। ମତେ ଏଇଠୁ ଘୋଷାରି ଘୋଷାରି ନେଇଯା । ନେଇଯା ସେଇ ଡ଼ଷ୍ଟବିନ୍‌ଟା ପାଖକୁ । ତାରି ଭିତରେ ଯେଉଁ ଅଇଁଠା ପତର ପଡ଼ିଛି, ସେଇଠି, ସେଇଠି ମତେ ଫୋପାଡ଼ି ଦେବୁରେ ମଣି । ମୁଁ ଆଉ କିଛି ... କିଛି ଚାହୁଁନି ମରିବା ପୂର୍ବରୁ । ଏଇଟା ମୋର ଶେଷ ଇଚ୍ଛା ! (ଢ଼ଳି ପଡ଼ିଲା)

ସଦାଶିବ ।। ରା - ଜା - !! (ଅଜାଡ଼ି ହେଇ ପଡ଼ିଲା ତା' ଉପରେ । ସଂଗେ ସଂଗେ ପୋଲିସ୍‌ର ଗୁଳି ଓ ଚିତ୍‌କାର ଶୁଭିଲା ଓ ସଦା ଚମକି ଉଠିଲା । ରାଜାର ମୃତ ଦେହଟାକୁ କାଂଧରେ ପକାଇଲା ଅନ୍ୟ ହାତରେ ଆଟାଚି ଧରିବା ପୂର୍ବରୁ)
ରାଜା !! ଧର୍ମ, ନୀତି, ଆଇନ, ସଂବିଧାନ, ସମାଜ ଓ ତାକୁ ତିଆରି କରିଥିବା ମଣିଷ ମାନଙ୍କ ବାହାରେ ଯେଉଁ ପୃଥିବୀ ଅଛି, ତୁ ସେ ପୃଥିବୀର ଜଣେ ମହାପୁରୁଷ ... ତୁ .... ତୁ ମୋର ସମ୍ରାଟ.... ତୋପାଇଁ ମୁଁ କିଛି କରିପାରୁନି ଭାଇ ... ସ୍ତ୍ରୀ ଛୁଆଙ୍କର

ସଂସାର ଭିତରେ ସବୁ ଅନ୍ୟାୟ ଓ ଦୁର୍ନୀତିକୁ ମୁଣ୍ଡପାତି ସହି ଯାଉଥିବା ମଣିଷ ମାନଙ୍କ ସମାଜ ଭିତରେ ମୁଁ ଏକ ବନ୍ଦୀ ପୁରୁଷ ... ମୁଁ କଣ କରିବି ? ମୁଁ କଣ କରିବି ? (ସଦା ରାଜାକୁ ଗଭୀର ଆଲିଙ୍ଗନରେ ଚୁମା ଦେଉ ଦେଉ ଉଭୟେ ଜଡ଼ ପାଲଟି ଗଲେ ପ୍ରସ୍ତର ମୂର୍ତ୍ତିଭଳି । ପ୍ରଥମ ଅଭିନେତା ଟିକରା ବଜାଇ ଓ ତାଙ୍କ ପଛରେ ଆଉ ତିନିଜଣ ଅଭିନେତା ପ୍ରବେଶ କଲେ ।)

ପ୍ରଥମ ଅଭିନେତା ।। ଆହେ ସଭାଜନେ, ବିଜ୍ଞଜନେ, ସାଧୁଜନେ, ନୀତି ଶିକ୍ଷା ଦେଉଥିବା, ନେଇଥିବା ଜନସାଧାରଣେ !
ଆହେ ବିଲେଇ ବେକରେ ଘଣ୍ଟି ବାଂଧି ଯେଉଁମାନେ କରୁଅଛ ଦୁର୍ନୀତି ନିବାରଣ- ଏହା ପରେ ନାଟକର ପରିଣତି କ'ଣ ?

ଦ୍ୱିତୀୟ ଅଭିନେତା ।। ଗୁରୁଦେବ ! ଅଖାଡୁଆ ପ୍ରଶ୍ନ କରି ଲୋକଙ୍କୁ କରୁଛ କିଆଁ ଏବେ ହଇରାଣ ?

ତୃତୀୟ ଅଭିନେତା ।। ଆହେ ନାଟକ ତ ହୁଏ ଏଠି ମନଖୁସି ପାଇଁ ହିଁ ହିଁ ହିଁ ହୋଇ ଟିକେ ହସିବା ପାଇଁ ସେୟା ନକଲେ ଏଠି ପଇସା ମିଳିବ ନାଇଁ । ସେୟା ନକଲେ ଏଠି ପଇସା ମିଳିବ ନାଇଁ ।

ଚତୁର୍ଥ ଅଭିନେତା ।। ଆରେ ଭାଇ !
ଆଜି ତ ଏଇଠି ବାଘ ମାତିଛି ।
ଦେଶ ଗୋଟାକ ସେ କୁଦା ମାରୁଛି ।
ଶିରା ପ୍ରଶିରାରେ ବାଘର ଖେଳ
ଚିନ୍ତା କରିବାକୁ ନାହିଁ ଯେ ବେଳ ।
ନୂଆ ନୀତି ପାଇଁ ନୂଆଁ ଇସ୍କୁଲ
ବସାଇଲେ କାଳେ ହୋଇବ ଭଲ ।

ପ୍ରଥମ ଅଭିନେତା ।। ତା' ହେଲେ ପୁଣି ଗୋଟେ ନୂଆ ଇସ୍କୁଲ ବସେଇବ କହୁଚ ?

ଦ୍ୱିତୀୟ ଅଭିନେତା ।। ଗୋଟେ କାଇଁକି ? କୋଟିଏ ଇସ୍କୁଲ ଖୋଲୁନ ?

ତୃତୀୟ ଅଭିନେତା ।। ଯା' ବୋଲ ପଛେ - ଚାଟଶାଳୀରେ କାମ ଚଳିବନି ।

ଚତୁର୍ଥ ଅଭିନେତା ।। ବିଶ୍ୱବିଦ୍ୟାଳୟ ନହେଲେ ପିଲା ଶିକ୍ଷିତ ହେବେନି

ପ୍ରଥମ ଅଭିନେତା ।। ହଉ ତମେମାନେ କହୁଚ ଯେତେବେଳେ

(ଗୋଟାଏ ସ୍କୁଲ ଘଣ୍ଟା ବାଜିଲା । ଦିନ ଦଶଟା ବୋଲି ଧରି ନିଆଯାଉ -
ବର୍ତ୍ତମାନ ପ୍ରଥମ ଅଭିନେତା ଜଣେ ବୁଢ଼ା ମାଷ୍ଟରଙ୍କ ଭଳି ଓ ଅନ୍ୟମାନେ ଛାତ୍ରଭଳି ଅଭିନୟ କରିବେ ।)

ପ୍ରଥମ ଅଭିନେତା ।। (ବୁଢ଼ା ମାଷ୍ଟରଙ୍କ ସ୍ୱରରେ) ହଁ ଆଜି କ'ଣ ପଢ଼ାହେବ ?

ଦ୍ୱିତୀୟ ଅଭିନେତା ।। ଅବୁଝା ରାଜାଙ୍କ ଜୀବନୀ । ଶହୀଦ ରାଜାଙ୍କ ଜୀବନୀ ।

ପ୍ରଥମ ଅଭିନେତା ।। ମୂର୍ଖ ଏମିତି ଗୋଟେ ପାଠ କୋର୍ଷରେ ନାଇଁ । ରାଜା ଗୋଟେ କେବେ ଶହୀଦ ହେଲା ? ସ୍ୱାଧୀନ ଭାରତରେ ରାଜା କିଏ ନାହାନ୍ତି ।

ତୃତୀୟ ଅଭିନେତା ।। -ଆଉ କିଏ ଶହୀଦ୍ ହେବ ? ଦେଶ ସେବା ନାଁରେ ଯେଉଁମାନେ ଲୋକଙ୍କର ଡ୍ୟାସ୍ ମାରୁଛନ୍ତି ?

ପ୍ରଥମ ଅଭିନେତା ।। ଚୋପ୍ !ଅଭଦ୍ର ଡ୍ୟାସ୍ ଗୋଟାଏ କ'ଣ ? ଠିଆ ହ ଗୋଟେ ଗୋଡ଼ରେ ନାକ, ବାଳ ଧରି ଠିଆହ' ଅଭଦ୍ର ! ଅଶ୍ଳୀଳ ଶିଶୁ !! ରହ ଆଜି ତୋ ବୋପାକୁ କହୁଛି ।
(ତୃତୀୟ ଅଭିନେତା ଗୁରୁଦେବଙ୍କ ନିର୍ଦ୍ଦେଶ ପ୍ରକାରେ ଠିଆ ହେଲା)

ଚତୁର୍ଥ ଅଭିନେତା ।। ସାର୍, ମତେ ଝାଡ଼ା ମାଡ଼ିଲାଣି ।

ତୃତୀୟ ଅଭିନେତା ।। ସାର୍ ତାକୁ ଝାଡ଼ା ମାଡ଼ିଲାଣି । ଆଜି ଇସ୍କୁଲ ଛୁଟି ।

ପ୍ରଥମ ଅଭିନେତା ।। ଇସ୍କୁଲ ଛୁଟି । ଝାଡ଼ା ମାଡ଼ିଲା ବୋଲି ଛୁଟି ... ହୁଁ ! ..ଏୟା କରିତ ମାଷ୍ଟ୍ର ଗୁଡ଼ାକୁ ତମେ ସବୁ ବଦନାମ କଲ । ହଉ ... ଆହେ ଦୟାମୟ ବିଶ୍ୱ ବିହାରୀଟା ଟିକେ ଗାଇଦିଅ ଛୁଟି କରିଦେବା ।

ଦ୍ୱିତୀୟ ଅଭିନେତା ।। ମିଛ କହିବାକୁ କିଆଁ ଡ଼ରିବି ?

ତୃତୀୟ ଅଭିନେତା ।। ମିଛ କହି ପଛେ ମଲେ ମରିବି ।

ଚତୁର୍ଥ ଅଭିନେତା ।। ମତେ ଏତିକି ଶିଖାଅ ସାଇଁ ହେ
ମୋର ଧନ ଜନ ଦରକାର ହେ ।

ପ୍ରଥମ ଅଭିନେତା ।। ଚୋପ ! (ଇସ୍କୁଲ ଘଣ୍ଟି ବାଜିଲା ଓ ପରଦା ପଡ଼ିଲା ସବୁ ଅଂଧାର)



**ଡ଼କ୍ଟର ରମେଶ ପ୍ରସାଦ ପାଣିଗ୍ରାହୀ (ଜ.୧୯୪୪)** ଗତ ୩୪ ବର୍ଷ ମଧ୍ୟରେ ଛୋଟବଡ ଶହେ ଖଣ୍ଡ ନାଟକର ରଚୟିତା । ସେ ଓଡ଼ିଶା ବ୍ୟବସାୟିକ ମଞ୍ଚର ଜଣେ ପ୍ରତିଷ୍ଠିତ ନିର୍ଦ୍ଦେଶକ ଏବଂ ରେଡ଼ିଓ, ଟେଲିଭିଜନ୍, ଚଳଚ୍ଚିତ୍ର ସହିତ ସଂପୃକ୍ତ । ୧୯୮୪ ରୁ ୧୯୯୧ ମଧ୍ୟରେ ପ୍ରାୟ ୭୦ ଖଣ୍ଡ ଯାତ୍ରାନାଟକ ଲେଖି ନିର୍ଦ୍ଦେଶନା ଦେଇଛନ୍ତି । ଏତଦ୍‌ବ୍ୟତୀତ ସେ ଆକାଶବାଣୀ ପାଇଁ ଗୀତ ରଚନା କରିଛନ୍ତି ଓ ତାଙ୍କ ନିର୍ଦ୍ଦେଶିତ ଦୁଇଟି ସଂଗୀତ କ୍ୟାସେଟ୍ ଅଛି । ନାଟ୍ୟକାର ଡ଼. ପାଣିଗ୍ରାହୀ ଆଲୋକ ସଂପାତ ଏବଂ ମଞ୍ଚ ସଜ୍ଜାରେ ଅଭ୍ୟସ୍ତ ଏବଂ ଓଡ଼ିଆ ଯାତ୍ରାରେ ପ୍ରଥମଥର ପାଇଁ ତିନୋଟି ମଞ୍ଚର ପରିକଳ୍ପନା କରିଛନ୍ତି । ସଂପ୍ରତି ଡ଼. ଦୀନନାଥ ପାଠୀଙ୍କ ସହ ସଂପାଦନା କରି Oddiyan Six Centemporary Painters from Orissa ନାମକ ଗ୍ରନ୍ଥ ଦିଲ୍ଲୀରୁ ପ୍ରକାଶ କରିଛନ୍ତି । ସେ Perspectives on Odissi Theatre ଏବଂ Danda Nata ନାମକ ଆଉ ଦୁଇଟି ଇଂରେଜୀ ଗ୍ରନ୍ଥର ପ୍ରଣେତା ।

XX XX XX XX

**ଅଂଧନଦୀର ସୁଅ :** ନାଟକଟିରେ ସାଂପ୍ରତିକ ସମାଜର ଅବକ୍ଷୟିତ ମୂଲ୍ୟବୋଧ ଗୁଡିକୁ ତୀବ୍ରଭାବେ ପ୍ରତ୍ୟାଖ୍ୟାନ କରାଯାଇଅଛି । ଏହି ନାଟକର ପରିବେଷଣ ଶୈଳୀ ନବନାଟ୍ୟ ଆନ୍ଦୋଳନର ପରିପ୍ରେକ୍ଷୀରେ ସଂପୂର୍ଣ୍ଣ ନୂତନ ଓ ଅନବଦ୍ୟ ବୋଲି କୁହାଯାଇପାରେ । ଲୋକନାଟ୍ୟ ପଦ୍ଧତିର ବହୁଳ ପ୍ରୟୋଗ କଥାବସ୍ତୁର ଅନୁଭୂତିକୁ ବ୍ୟଞ୍ଜନାମୟ କରି ତୋଳିଛି । ତା'ଛଡା ଚରିତ୍ର ମାନଙ୍କର ପଠନ ଶୈଳୀରେ ଏକ ନୂତନଆଙ୍ଗିକ ଲକ୍ଷ୍ୟ କରାଯାଏ । ମୂକ ଅଭିନୟ, ପେଣ୍ଟୋମାଇମ୍, ନୃତ୍ୟାୟିତ ଛନ୍ଦ ଓ କାବ୍ୟିକ ସଂଳାପର ପ୍ରୟୋଗ ଦୃଷ୍ଟିରୁ ଏହା ଓଡିଆ ନାଟ୍ୟ ସାହିତ୍ୟର ଏକ ସଂପୂର୍ଣ୍ଣ ନୂତନ ଅଧ୍ୟାୟ ।

**ଅଧ୍ୟାପକ ନୀହାର ପଟ୍ଟନାୟକ,** 'ରୂପ, ରସ, ଛନ୍ଦ' ପ୍ରଜାତନ୍ତ୍ର (୧୯୮୧)